# ରାଞ୍ଚି-ଇତିହାସ

ଲେଖକ

ଶ୍ରୀ ନୀଳକଣ୍ଠ ରଥ-ଶର୍ମା

ପ୍ରଥମ ସଂସ୍କରଣ

୧୯୩୬

ପ୍ରକାଶକ

ସରସ୍ୱତୀ ଷ୍ଟୋର

ରାଞ୍ଚି

ମୂଲ୍ୟ ଦୁଇଅଣା । ⁄

# ଉତ୍ସର୍ଗ

ବାଙ୍କୀ ରାଜବଂଶୋଦ୍ଭବ, ଉଦାରମନା

ଗୁଣଗ୍ରାହୀ

ଶ୍ରୀଯୁକ୍ତ ସାମନ୍ତ ବିଶ୍ୱନାଥ ଶ୍ରୀଚନ୍ଦନ ମହାପାତ୍ର B. A. ଙ୍କ

ମହୋଦାର ଗୁଣଗ୍ରାହକତାର

ନିଦର୍ଶନ ସ୍ୱରୂପ

ଉତ୍ସୃଷ୍ଟ

ଶ୍ରୀ ରଘୁନାଥ ଦେବଙ୍କ ମନ୍ଦିର
ପଦ୍ମନାଭପୁର ଶାସନ
ବାଙ୍କୀ

ଭବଦୀୟ କୃପାପ୍ରାର୍ଥୀ
ରଚୟିତା

# ପଦେ ଅଧେ

ଓଡ଼ିଶାର ଶ୍ରେଷ୍ଠ ଶ୍ରେଷ୍ଠ ଗଡ଼ଜାତମାନଙ୍କର ଇତିହାସ ଲେଖିବା-ଲାଗି ଏପର୍ଯ୍ୟନ୍ତ କୌଣସି ଚେଷ୍ଟା କରାଯାଇ ନାହିଁ । ଏତଦ୍ଦ୍ୱାରା ଦେଶର ସାମାଜିକ, ରାଜନୈତିକ ଓ ପ୍ରାଚୀନ ଶିଳ୍ପବିଦ୍ୟା ପ୍ରଭୃତି ଅନେକ ଜ୍ଞାତବ୍ୟ ବିଷୟ ଲୁପ୍ତ ରହି ଯାଉଅଛି । ସେ ସବୁର ଉଦ୍ଧାର ଓ ସାଧାରଣରେ ପ୍ରଚାର କରିବା ନିମିତ୍ତ ସର୍ବାଗ୍ରେ ଯତ୍ନ କରିବା ବାଞ୍ଛନୀୟ ।

ମୁଁ ଆଜି ଯେ "ବାଙ୍କୀ-ଇତିହାସ" ଲେଖିପାରିଛି, ଏଥିରେ ମୋର କୌଣସି କୃତିତ୍ୱ ନାହିଁ, ବରଂ ଭ୍ରମପ୍ରମାଦପୂର୍ଣ୍ଣ ହୋଇଥିବ ବୋଲି ମୋର ଆଶଙ୍କା ହେଉଛି; କାରଣ ମୁଁ ଐତିହାସିକ କିମ୍ବା ପ୍ରତ୍ନତତ୍ତ୍ୱ-ଅନୁସନ୍ଧିତ୍ସୁ ନୁହେଁ । କେବଳ ମୋର ଜ୍ୟେଷ୍ଠପିତୃ, ପିତା ଓ ଭ୍ରାତାଙ୍କ ସଂଗୃହୀତ କେତେକ ବିଷୟ, ଆଜିକାଲିର ବୁଢ଼ାବୁଢ଼ୀମାନଙ୍କ ଠାରୁ ଶୁଣିବା ଗଳ୍ପ, ପ୍ରବାଦ, କିମ୍ବଦନ୍ତୀ ପ୍ରଭୃତି ଏ ରଚନାର ଭିତ୍ତି ।

ଭବିଷ୍ୟତରେ କୌଣସି ଐତିହାସିକ ଏ ସମ୍ବନ୍ଧରେ ନୂତନ ତଥ୍ୟମାନ ଆବିଷ୍କାର କରି ଜଣାଇଲେ କିମ୍ବା ଏହି ସଂସ୍କରଣରେ କୌଣସି ଭ୍ରମ ପ୍ରମାଦ ଦେଖାଇଦେଲେ, ପରେ ସେ ସବୁ ସଂଶୋଧନ କରିବାଲାଗି ଯତ୍ନ କରିବ ।

ବାଙ୍କୀ ଇଉନିୟନ ବୋର୍ଡର ପ୍ରେସିଡେଣ୍ଟ ରାୟସାହେବ ଖଗେନ୍ଦ୍ରଚନ୍ଦ୍ର ମହାପାତ୍ର ବି. ଏ., ସୋଦରପ୍ରତିମ ବନ୍ଧୁ ଶ୍ରୀଯୁକ୍ତ ଗୌରମୋହନ ପାଢ଼ୀ, ବାଙ୍କୀ ସରସ୍ୱତୀ ଷ୍ଟୋର ମାନେଜର ଶ୍ରୀମାନ୍ ଗୋଲକବିହାରୀ ମିଶ୍ର ଏ ପୁସ୍ତକ ପ୍ରଣୟନ ଓ ମୁଦ୍ରଣରେ ବିଶେଷ ସାହାଯ୍ୟ କରିଅଛନ୍ତି; ତେଣୁ ମୁଁ ସେମାନଙ୍କ ନିକଟରେ କୃତଜ୍ଞତା ଜ୍ଞାପନ କରୁଅଛି । ଇତି ।

ରଘୁନାଥଦେବଙ୍କ ମନ୍ଦିର
ବାଙ୍କୀ
ତା ୪।୮।୩୪

ବିନୀତ
**ରଚୟିତା**

# ସୂଚୀପତ୍ର

# ବାଙ୍କୀ ଇତିହାସ

## ପ୍ରଥମ ଅଧ୍ୟାୟ

### ( ସଂକ୍ଷିପ୍ତ ଭୂଗୋଳ ବିବରଣ )

**୧ । ସୀମା ଓ ଅବସ୍ଥାନ—**

ଏକ ସମୟରେ ବାଙ୍କୀର ସୀମା ଖଣ୍ଡପଡ଼ା ନୀଳମାଧବଙ୍କଠାରୁ ଆଠଗଡ଼ ଦୋସୀମାଳୀ ଅମଙ୍ଗେଇ କୂଦ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଆଜି-କାଲି ମଧ୍ୟ ଏ ବିଷୟରେ ପ୍ରବାଦ ଅଛି ଯେ, ବାଙ୍କୀରାଜା ଅମେଇଁଠାରୁ କମେଇଁ ପର୍ଯ୍ୟନ୍ତ ରାଜ୍ୟ ଭୋଗ ଦଖଲ କରୁଥିଲେ । ପୂର୍ବ ସୀମାରେ ଅମଙ୍ଗେଇ ( ଅମେଇଁ ) ଠାକୁରାଣୀ ମହାନଦୀ ମଧ୍ୟରେ କନ୍ଦରପୁର ପାହାଡ଼ ତଳେ ଅଛନ୍ତି । ଏଠାର ପାଇକମାନେ ଥରେ ଯୁଦ୍ଧ କରିବାକୁ ଅନିଚ୍ଛୁକ ହେବାରୁ ରାଜା ସେଠାରେ ଉକ୍ତ ଠାକୁରାଣୀଙ୍କୁ ବସାଇ ଗଡ଼କୁ ଫେରି ଆସିଥିଲେ । ପଶ୍ଚିମରେ କମେଇଁ ନଦୀ ଖଣ୍ଡ-ପଡ଼ାରେ ପ୍ରବାହିତ ।

ଅଧୁନା କାଳିଗିରି ନଦୀ ବାଙ୍କୀର ପଶ୍ଚିମ ସୀମା । ଏ ନଦୀ ବୈଦ୍ୟେ-ଶ୍ୱର ନିକଟରେ ପ୍ରବାହିତ । ବାଙ୍କୀର ଉତ୍ତର ସୀମା ଡଗିରଆର ବାହୁଣି-ପୁଟ ଓ ଦକ୍ଷିଣ ସୀମା ଖୋର୍ଦ୍ଧାର ପଞ୍ଚାରିସିଦ୍ଧ ଗଡ଼ । କେଉଁ ରାଜାଙ୍କ ରାଜତ୍ୱ କାଳରେ କମାଇଁ ମୂହଁଠାରୁ କାଳିଗିରି ନଦୀ ମଧ୍ୟସ୍ଥ ସୀମା ବିଚ୍ଛିନ୍ନ ହୋଇ ଖଣ୍ଡପଡ଼ା ନୀଳମାଧବଙ୍କ ପର୍ଯ୍ୟନ୍ତ ବିସ୍ତୃତ ହୋଇଥିଲା, ତାର ବିବରଣ ଜଣା ନାହିଁ । ବାଙ୍କୀର ସରଣ୍ଡା ଛଅ କୋଶ ମଧ୍ୟରୁ ଆଠଗଡ଼ ରାଜା ସାତଗଡ଼ ନେଇ ଭୋଗ କରୁଅଛନ୍ତି । ଏପରି କି ଆଠଗଡ଼ ଲୋକେ କହନ୍ତି—କନ୍ଦୋଳ ଗ୍ରାମସ୍ଥ ଦକ୍ଷିଣ ଚଣ୍ଡୀଙ୍କ ପଶ୍ଚିମ ପାବଚ୍ଛ ପର୍ଯ୍ୟନ୍ତ ବାଙ୍କୀର ସୀମା ଥିଲା । ପୁଣି କିମ୍ବଦନ୍ତୀରୁ ଜଣାଯାଏ ଯେ, ଆଠଗଡ଼ର କୌଣସି ରାଜା ଲକ୍ଷ୍ମୀ ପ୍ରସାଦ ଗଡ଼ କନ୍ୟାକୁ ଯୌତୁକ

ସ୍ୱରୂପ ଦାନ କରିଥିବାରୁ, ଉପରୋକ୍ତ ଠାକୁରାଣୀ ବାଙ୍କୀ ରାଜାଙ୍କ ସହିତ ଯୁଦ୍ଧ କରି ବାଙ୍କୀର କେତେକାଂଶ ଆଠଗଡ଼ ରାଜାଙ୍କୁ ଦେଇଥିଲେ । ପରିଶେଷରେ ସୀମା ନିର୍ଦ୍ଧାରଣର ପ୍ରଧାନ ପୋଷକ ସ୍ୱରୂପ ଗଜପତିଙ୍କ ଶ୍ରୀହସ୍ତରୁ ବ୍ରଜବିହାରୀ ଶ୍ରୀଚନ୍ଦନ ମହାପାତ୍ରଙ୍କୁ ଯେ ସନନ୍ଦ ( ୧୮୮୦ ମହିହାରେ ସଂଗୃହୀତ "ବାଙ୍କୀ ରାଜ୍ୟ ବର୍ଣ୍ଣନା" ଶୀର୍ଷକ ପ୍ରବନ୍ଧରୁ ଗୃହୀତ) ମିଳିଥିଲା, ତାହା ନିମ୍ନରେ ଦିଆଗଲା—

### ମହାରାଜଙ୍କ ଶ୍ରୀହସ୍ତମୂରୁ ବ୍ରଜବିହାରୀ ସିଂହଙ୍କୁ ଚିଠାଉ

ତୁମ୍ଭଙ୍କୁ ଯେ ଅନୁଗ୍ରହ କରି ଶ୍ରୀଚନ୍ଦନ ମହାପାତ୍ର ପଦ, ବାଙ୍କୀ ଜମିଦାର ଶାଢ଼ୀ, ଶୁକ ଛତ୍ର ଓ କଳା ଛତି, ସାଙ୍ଗିଲି ଘୋଡ଼ା, ସମସ୍ତା ଶିରୋପା ମଧ୍ୟ ଖଣ୍ଟଣୀ ପିଣ୍ଡିକ ହରିଚନ୍ଦନଙ୍କ ମାରଫତରେ ଆଜ୍ଞା ଦେଲୁ । ଏ ବାଙ୍କୀ ପୃଥିବୀ କମାଇଁ ମୁହଁଠାରୁ ଅମାଇ ମୁହଁଯାଏ ଅମଲ କରି ମହାଶ୍ରମ ସେବାରେ ହାଜର ଥିବ । ମରାଡ଼ି ବାପ ପରମ୍ପରା ମାଫିକେ କରିବ । ଆଉ ବିଷୟ ଏହାଙ୍କଠାରୁ ଜାଣିମ ।

"ଅ ୧୯ ଙ୍କ ମିଥୁନ ଦି ୨୨ ନ

## ୨ । କ୍ଷେତ୍ରଫଳ, ଲୋକସଂଖ୍ୟା ଓ ଆୟ—

ପୂର୍ବେ ବାଙ୍କୀ ତିନି ଭାଗରେ ବିଭକ୍ତ ଥିଲା:— ବାଙ୍କୀ, ସରଣ୍ଡା, ଡମପଡ଼ା । ଅଧୁନା ବାଙ୍କୀ ଓ ସରଣ୍ଡା ଏକତ୍ର ମିଶ୍ରିତ ହୋଇ ଏବଂ ଡମପଡ଼ା ମଧ୍ୟ ବିଗ୍ରହ ବିଭାଗରେ ବାଙ୍କୀର ଅନ୍ତର୍ଭୁକ୍ତ ଥାଇ ବାଙ୍କୀ ନାମରେ ଅଭିହିତ ହେଉଅଛୁ । ବାଙ୍କୀ ଡମପଡ଼ାର କ୍ଷେତ୍ରଫଳ ପ୍ରାୟ ୧୯୮ ବର୍ଗ ମାଇଲ; ଗତ ଜନ-ତୁମାରରେ ଲୋକସଂଖ୍ୟା ୮୪୪୦୬ ଓ ସରକାରଙ୍କ ଆୟ ଟ ୫୧୪୦୦ ଙ୍କା ।

## ୩ । ପ୍ରଧାନ ପ୍ରଧାନ ଗ୍ରାମ—

ବାଙ୍କୀରେ ଛୋଟ ବଡ଼ ହୋଇ ୧୪୪ଟି ମଉଜା ଅଛୁ । ନିମ୍ନରେ କେତୋଟି ପ୍ରସିଦ୍ଧ ଗ୍ରାମର ନାମ ଓ ବିବରଣ ଦିଆଗଲା ।

କଳାପଥର, ବ୍ରହ୍ମପୁରା, ରଗଡ଼ୀ, ତୁଳସୀପୁର, ପାଟପୁର, ବୈଦ୍ୟେଶ୍ୱର, ଗୁଡ଼ୁଣ୍ଡିପୁର, ଘୋଡ଼ାବର, ଘୋଲପୁର, ରତାଗଡ଼ ଓ ମାଳବିହାରପୁର ।

**କଳାପଥର—**

ବାଙ୍କୀର ପଶ୍ଚିମ ସ୍ଥଳରେ କଳାପଥର ଗ୍ରାମ ଅବସ୍ଥିତ। ଏଠାରେ ପ୍ରତି ସୋମବାର ଓ ଗୁରୁବାର ଦିନ ହାଟ ବସେ। ଖୋରଧା, ରଣପୁର, ନୟାଗଡ଼ ଓ ଖଣ୍ଡପଡ଼ା ପ୍ରଭୃତିରୁ ବହୁତ ଲୋକ ଏ ହାଟରେ ଜମା ହୁଅନ୍ତି। କଳାପଥରର ଜଳବାୟୁ ସ୍ୱାସ୍ଥ୍ୟପ୍ରଦ ଓ ସୁଖକର। ଏ ଗ୍ରାମର କାଗଜ ଅତି ସୁନ୍ଦର। ଏଠାର ହନୁମନ୍ତିଆ ଗୁଆକାତି ପୂର୍ବ ସମୟରେ କଲିକତା ବଜାରରେ ବିକ୍ରୟ ହେଉଥିଲା। ବର୍ତ୍ତମାନ ଏକ ରକମ ଏ କାଗଜର ବଂଶ ଲୋପ ପାଇଲାଣି। ଏଠା ପୁଷ୍କରଣୀର ମାଛଗୁଡ଼ିକ ବଡ଼ ମିଷ୍ଟ।

**ବ୍ରହ୍ମପୁରା—**

ଏ ଗ୍ରାମରେ ବ୍ରହ୍ମଜାତି ବହୁ ପରିମାଣରେ ବାସ କରନ୍ତି। ଏମାନେ ବୌଦ୍ଧ। ବ୍ରହ୍ମଜାତି ବହୁଳ ହୋଇଥିବାରୁ ଏ ଗ୍ରାମର ନାମ ବ୍ରହ୍ମପୁରା ହୋଇଅଛି। ଏ ଜାତି ବଡ଼ ଧର୍ମୀ ଓ ବାଣିଜ୍ୟ-କୁଶଳ। ଏଠାରେ ମଧ୍ୟ ତନ୍ତୀ ଅଛନ୍ତି। ଏମାନେ ବଡ଼ ସୁନ୍ଦର ଲୁଗା ବୁଣନ୍ତି। ସେମାନଙ୍କ ଖଦି ଓ ଗାମୁଛା ଲାଗି ଏ ଗ୍ରାମ ପ୍ରସିଦ୍ଧ।

**ରଗଡ଼ୀ—**

ପ୍ରାଚୀନ ରାଜାମାନଙ୍କର ଏ ଗ୍ରାମ ଉପରେ ଅଧିକାଂଶ ସମୟରେ ରଗଡ଼ ଅଥବା ତୀବ୍ର ଦୃଷ୍ଟି ପଡ଼ୁଥିବାରୁ ଏ ଗ୍ରାମର ନାମ ରଗଡ଼ୀ ହୋଇ-ଅଛି। ପୀତାମ୍ବର ଶ୍ରୀଚନ୍ଦନଙ୍କ ପ୍ରତିଷ୍ଠିତ ପୀତାମ୍ବରପୁର ଶାସନ ଏ ମୌଜାର ଅନ୍ତର୍ଗତ। ଏ ଗ୍ରାମରେ ଅନ୍ୟ ପାଟକର ଅନେକ ଲୋକ ମଧ୍ୟ ବାସ କରନ୍ତି। ଏମାନଙ୍କ ମଧ୍ୟରେ ଅଧିକାଂଶ ସରାକ। ଏମାନେ ଭଲ ଶାଢ଼ୀ ବୁଣନ୍ତି। ଏହାକୁ ସରାକ ଶାଢ଼ୀ ବୋଲାଯାଏ। ଏ ଶାଢ଼ୀଗୁଡ଼ିକ ଏପରି ସୁନ୍ଦର ଓ ମୂଲ୍ୟବାନ୍ ଯେ, ତାହା ଓଡ଼ିଶା ବାହାରେ ମଧ୍ୟ ଆଦୃତ ହୋଇଥାଏ। ସରାଗି ଫେଟା ଓ ମାଣିଆବନ୍ଧୀ ଯୋଥ ମଧ୍ୟ ଏଠାରେ ମିଳେ। ସରାକମାନେ ବୌଦ୍ଧ। ପ୍ରସିଦ୍ଧ ଠାକୁର ମହାମାମଣିଙ୍କ ମନ୍ଦିର ଏହି ଗ୍ରାମରେ ବିଦ୍ୟମାନ।

**ତୁଳସୀପୁର—**

ବାଙ୍କୀ ରାଜବଂଶର ତୁଳସୀ ଦେଇ ନାମ୍ନୀ ରାଣୀଙ୍କ ନାମାନୁସାରେ ଏ ଗ୍ରାମର ନାମ ତୁଳସୀପୁର ହୋଇଅଛି । ମାତ୍ର ରାଜବଂଶାବଳୀ ମଧ୍ୟରୁ ଏପରି କୌଣସି ରାଣୀଙ୍କ ନାମ ମିଳେ ନାହିଁ । ଅନେକେ କହନ୍ତି, ଯେତେବେଳେ ଖୋରଧାରେ ଭୋଇ ବଂଶୀୟ ରାଜାମାନେ ରାଜପଣ କରୁଥିଲେ, ସେତେବେଳେ ସେହି ବଂଶୀୟ ଜଣେ ରାଣୀ ଏହି ଗ୍ରାମ ବସାଇଥିଲେ । ସେହେତୁ ବୋଧହୁଏ ଏ ଗ୍ରାମ ଅଧେ ବାଙ୍କୀ ଓ ଅଧେ ଖୋର୍ଦ୍ଧାରେ ଅବସ୍ଥିତ । ଏ ଗ୍ରାମରେ ଅନେକ ରଙ୍ଗଣୀ ଓ ତେଲି ମହାଜନ ଅଛନ୍ତି । ଅତି ସୁନ୍ଦର ମୁଗେଇ ଓ ପଖାଳ ଖିଆ ଏଠାରେ ମିଳେ ।

**ପାଟପୁର—**

ଏହାର ଚତୁର୍ଦ୍ଦିଗରେ ପାଟ ଥିବାରୁ ବୋଧହୁଏ ଗ୍ରାମର ନାମ ପାଟପୁର ହୋଇଅଛି । ପଦ୍ମନାଭ ଶ୍ରୀଚନ୍ଦନଙ୍କ ପ୍ରତିଷ୍ଠିତ ପଦ୍ମନାଭପୁର ଶାସନ ଏ ମୌଜାର ଅନ୍ତର୍ଗତ । ଏହାର ଲୋକସଂଖ୍ୟା ପ୍ରାୟ ପାଞ୍ଚ ହଜାର ହେବ । ଏ ଗ୍ରାମରେ ଷଠିଏ ଜାତିର ଲୋକ ବାସ କରନ୍ତି । ସୁପ୍ରସିଦ୍ଧ ସିଂହନାଥଦେବଙ୍କ ମନ୍ଦିର ଏହି ଗ୍ରାମରେ । ଏଠାରେ ଶିବ ଚତୁର୍ଦ୍ଦଶୀ ଦିନ କାଁଶର ଯାତ୍ରା ହୁଏ । ଏହା ବ୍ୟତୀତ ଶୀତଳ ଷଷ୍ଠୀ ଓ ଦୋଳ ପୂର୍ଣ୍ଣିମା ମଧ୍ୟ ହୋଇଥାଏ । ଏ ଠାକୁରଙ୍କର ଆଠ ବାଟୀ ଜମି ଲାଗି ଅଛି । ମହାନଦୀର ଶାଖା ଲୁଣୁଆ ଏ ଗ୍ରାମର ପୂର୍ବ ଦିଗରେ ବହି ଯାଇଅଛି । ଏହାର ତୀରବର୍ତ୍ତୀ ଭୂମିକୁ "ପଟ୍ଟମାଳ" କହନ୍ତି । ଏହି ପଟ୍ଟରେ ଧୂଆଁପତ୍ର ଓ ପ୍ରଚୁର ପରିମାଣରେ ଲୁଣୁଆ ବାଇଗଣ ହୁଏ । ଏ ବାଇଗଣର ସର୍ବତ୍ର ଆଦର । ଏହା ବିଷୟରେ ଲୋକେ କହନ୍ତି—

"ରଣ ବଣ ଛଣ—ଏଥି ଜମ୍ପିଡ଼ା ରଜାଙ୍କ ପଣ
ବାଙ୍କୀ ଶ୍ରୀଚନ୍ଦନ ଥାଇ ବୋଇଲେ ମୋ ଲୁଣୁଆ ବାଇଗଣ ।"

ଗ୍ରାମର ଚତୁର୍ଦ୍ଦିଗରେ ପାଟ ଥିବାରୁ ଏଠାରେ ମାଛ ପ୍ରଚୁର ପରିମାଣରେ ମିଳେ । ଡାଲୁଅ ଫସଲ ମଧ୍ୟ ହୁଏ ।

**ବୈଦ୍ୟେଶ୍ୱର—**

ଏହା ମହାନଦୀର ଦକ୍ଷିଣ ତୀରସ୍ଥ ଗୋଟାଏ ବଡ଼ ଗ୍ରାମ । ଏ ଗ୍ରାମସ୍ଥ ମହାଜନମାନେ ସମ୍ବଲପୁର, ସରଗୁଜା, ରାୟପୁର ପ୍ରଭୃତି ସ୍ଥାନରେ ବ୍ୟବସାୟ ବାଣିଜ୍ୟ କରନ୍ତି । ଏ ଗ୍ରାମର ରଙ୍ଗଣୀମାନେ ବଡ଼ ସୁନ୍ଦର ଲୁଗା ବୁଣି ପାରନ୍ତି । ସୋମନାଥ ଓ ବୈଦ୍ୟନାଥଙ୍କ ମନ୍ଦିର ଏ ଗ୍ରାମରେ ଅବସ୍ଥିତ । ଏଠାରେ ପ୍ରଚୁର ପରିମାଣରେ ମୂଲ୍ୟବାନ୍ କାଷ୍ଠ ବିକ୍ରୟ ହୁଏ । ଅଧିକାଂଶ ଖୋରଧାକୁ ପଠାଯାଇଥାଏ । ଏ ଗ୍ରାମରେ ଉତ୍କଳ-ବିଖ୍ୟାତ ପଣ୍ଡିତ ନୀଳମଣି ବିଦ୍ୟାରତ୍ନ ଜନ୍ମ ହୋଇଥିଲେ । ବ୍ରଜବିହାରୀ ଶ୍ରୀଚନ୍ଦନଙ୍କ ପ୍ରତିଷ୍ଠିତ ବ୍ରଜବିହାରୀପୁର ଶାସନ ଏହି ମୌଜାରେ ଅବସ୍ଥିତ ।

**ସୁବର୍ଣ୍ଣପୁର—**

ଏଠାରେ ଚଉଷଠି ଦେବଙ୍କ ମନ୍ଦିର ପ୍ରଧାନ ଦେବାଳୟ । ଠାକୁରଙ୍କର ସାତ ବାଟୀ ଜମି ଖଞ୍ଜା ଅଛି । ଦୋଳ ଓ ଗୁଣ୍ଡିଚା ଉପଲକ୍ଷେ ଏଠାରେ ଯାତ୍ରା ହୁଏ । ସୁବର୍ଣ୍ଣେଶ୍ୱର ମହାଦେବଙ୍କ ମନ୍ଦିର ମଧ୍ୟ ଏହି ଗ୍ରାମରେ ଅବସ୍ଥିତ । କେଶରୀ ବଂଶୀୟ ରାଜା ସୁବର୍ଣ୍ଣକେଶରୀ ଏଠାରେ ତାଙ୍କ ଅନ୍ତିମ-କାଳ ଯାପନ କରିଥିଲେ । ଏହି ଗ୍ରାମ ତାଙ୍କ ନାମାନୁସାରେ ସୁବର୍ଣ୍ଣପୁର ହୋଇଅଛି ବୋଲି ଅନେକ ପ୍ରମାଣ ମିଳେ । ଏଠାରେ ଗୋଟିଏ ମାଇନର ସ୍କୁଲ ଅଛି ।

**ଘୋଲପୁର—**

ଏ ଗ୍ରାମଟି ଅତି ବୃହତ୍ । ଏଠାରେ ଆଗେ ପ୍ରଚୁର ପରିମାଣରେ ଘୋଳ ଦହି ମିଳୁଥିଲା; ସେଥିଲାଗି ଏ ଗ୍ରାମର ନାମ ଘୋଲପୁର । ଏ ଗ୍ରାମରେ ପ୍ରତିଦିନ ଗୋଟିଏ ଛୋଟ ହାଟ ବସେ । ଏଠାରେ ବିଭିନ୍ନ ଜାତିର ଲୋକେ ବାସ କରନ୍ତି । ବଡ଼ ସୁନ୍ଦର ଛୋଟ ଛୋଟ କରିଆ ଏଠାର ତନ୍ତି-ମାନେ ବୁଣି ପାରନ୍ତି ।

ଡମ୍ପଡ଼ାର ମୌଜା ସଂଖ୍ୟା ୩୬ । ତନ୍ମଧ୍ୟରେ ତାଳବସ୍ତ, ନଳଗଡ଼, ଲୁସୁନ୍ଦା ଓ ପାଥପୁର ପ୍ରଧାନ ।

**ଡାଲବସ୍ତ—**

ଏହା ଗୋଟିଏ ବଡ଼ ଗ୍ରାମ । ଏହାର ଗୃହସଂଖ୍ୟା ୬୦୦ ହେବ । ଏଥିରେ ନାନା ଜାତିର ଲୋକେ ବାସ କରନ୍ତି । କପିଳେଶ୍ୱର ଓ ଚୈତନ୍ୟଜୀଉଙ୍କ ମନ୍ଦିର ଏ ଗ୍ରାମରେ ଅବସ୍ଥିତ ।

**ନନ୍ଦଗଡ଼—**

ଡ଼ମ୍ପଡ଼ା ଗଡ଼ ଗୋଟିଏ ପାହାଡ଼ ଉପରେ ଅବସ୍ଥିତ । ଗଡ଼ର ପ୍ରାୟ ଦୁଇ କୋଶ ଅନ୍ତରରେ "ମାଡ଼ଆ ଦ୍ୱାର" ବୋଲି ଗୋଟିଏ ଜାଗା ଅଛି । ଏଠାରେ ପୂର୍ବକାଳରେ ଗଡ଼ ଥିଲା । ବର୍ତ୍ତମାନ ଏଠାରେ ଗଣି ଗଣି ପ୍ରସ୍ତର ଜମା ହୋଇଅଛି । ରେଲୱାଇ କମ୍ପାନୀ ସେଥିରୁ ଅନେକ ପଥର ନେଇଥିଲେ । ଏହାର ଅଦୂରବର୍ତ୍ତୀ ପଥର ଚଟାଣକୁ "ଧାନଘର ଚଟାଣ" କହନ୍ତି । ପୂର୍ବେ ରାଜାମାନେ ଏଠାରେ ଧାନ ରଖି ପ୍ରଜାମାନଙ୍କୁ ବାଣ୍ଟୁଥିଲେ ।

**କୁସୁପ୍ପା—**

ଏ ଗ୍ରାମରେ ଭକ୍ତକବି ଦ୍ୱିଜ ପୁରାଣ ଦାସ ଜନ୍ମ ହୋଇଥିଲେ । ଏହାଙ୍କ ରଚିତ "ରାମକୃଷ୍ଣ କେଳି-କଲ୍ଲୋଳ" ବଡ଼ ମନୋହର ଗ୍ରନ୍ଥ ।

**ପାଥିପୁର—**

ଏ ମୌଜା ନିକଟସ୍ଥ ପର୍ବତ ଉପରେ ଗୋଟିଏ ଗୁମ୍ଫା ରହିଅଛି । ଏହାକୁ ଲୋକେ "ପାଣ୍ଡବ ବଖରା" କହନ୍ତି । ପାଣ୍ଡବମାନେ ବନବାସ ସମୟରେ ଏଠାରେ ଆସି ରହିଥିବାର କିମ୍ବଦନ୍ତୀ ଅଛି । ମକରସଂକ୍ରାନ୍ତି ଦିନ ଏଠାରେ ଗୋଟିଏ ମେଳା ହୁଏ । ନିକଟବର୍ତ୍ତୀ ଗ୍ରାମମାନଙ୍କରୁ ବହୁତ ଲୋକ ଆସି ଜମା ହୁଅନ୍ତି ।

**୪ । ପ୍ରଧାନ ପ୍ରଧାନ ଗଡ଼—**

ବାଙ୍କୀରେ ଛଅଟି ଗଡ଼ ଥିଲା । ଏ ସବୁ ଶତ୍ରୁପକ୍ଷେ ଦୁର୍ଭେଦ୍ୟ ଓ ଅଧିକାଂଶ ସମୟରେ ରାଜାଙ୍କର ଆଶ୍ରୟ ସ୍ଥଳ । ମଧୁଆ ପଲ୍ଲୀ, ନରଗାଙ୍ଗ, ଚଢ଼େଇବନ୍ଧ, ମାଳତୀ ମୁଣ୍ଡିଆ, ସରଣ୍ଡା ଓ ବାଉଁଶ ପୁଟ । ଏମାନଙ୍କ ମଧ୍ୟରେ ଶେଷୋକ୍ତ ତିନୋଟି ଉଲ୍ଲେଖଯୋଗ୍ୟ ।

**ମାଳତୀମୁଣ୍ଡିଆ—**

ଉପରୋକ୍ତ ଗଡମାନଙ୍କ ମଧ୍ୟରେ ମାଳତୀ ମୁଣ୍ଡିଆ ପ୍ରସିଦ୍ଧ ଓ ବାଙ୍କୀ ରାଜାଙ୍କର ଅଧିକାଂଶ ସମୟରେ ଆଶ୍ରୟ ସ୍ଥଳ ଥିଲା; କାରଣ ଏହାର ପୂର୍ବରେ ଗୋଧେଇ ନାମକ ଗଭୀର ଜଳବିଶିଷ୍ଟ ନଦୀ, ପଶ୍ଚିମରେ ପର୍ବତ, ଉତ୍ତରରେ ମହାନଦୀ ଓ ଦକ୍ଷିଣରେ ଘୋର ଅରଣ୍ୟଭୂମି । ଦକ୍ଷିଣ ଭାଗରେ, ଗୋଟିଏ ଦୁର୍ଭେଦ୍ୟ ଦଣ୍ଡା ମନୁଷ୍ୟ ଯାତାୟାତ ଲାଗି ପ୍ରସ୍ତୁତ ହୋଇଥିଲା । ପୂର୍ବେ ଘନ ଘନ ଯୁଦ୍ଧ ହେଉଥିବାରୁ ରାଜାମାନେ ଏପରି ସ୍ଥାନକୁ ନିରାପଦ ମଣି ବାସ କରୁଥିଲେ । ବାଙ୍କୀ ଗଡରେ "କମଳା ବାଗ" ବୋଲି ଗୋଟିଏ ସ୍ଥାନ ଅଛି । ଅଧୁନା ସେଠାରେ ଅନେକ କଟା ପଥର ଜମା ହୋଇଅଛି । ପ୍ରାଚୀନ ଗଡର ଭଗ୍ନାବଶେଷ ମଧ୍ୟ ଏଠାରେ ଦୃଷ୍ଟିଗୋଚର ହୁଏ ।

**ସରଣ୍ଡା—**

ଅଂଶୁପା ହ୍ରଦ ନିକଟସ୍ଥ ପର୍ବତ ଉପତ୍ୟକାରେ ସରଣ୍ଡା ଅବସ୍ଥିତ । ପୁରାତନ ଗଡର ଭଗ୍ନାବଶେଷ ପ୍ରସ୍ତରମାନ ଏଠାରେ ସ୍ତୂପାକାରରେ ରହିଅଛି । ପୂର୍ବେ ଏ ଗଡରେ କଂସାର କବାଟ ଥିଲା ବୋଲି ଲୋକେ କହନ୍ତି । ଆଜିକାଲି ମଧ୍ୟ କଉଡ଼ି ଖଣି, ବାରୁଦଖଣି, ଓ ଦେଉଳର ଭଗ୍ନାବଶେଷ ଏଠାରେ ଦେଖିବାକୁ ମିଳେ ।

**ବାଉଁଶପୁଟ—**

ଏହି ଗଡଠାରୁ ବାଙ୍କୀରାଜା କପିଳେଶ୍ୱର ମହାଦେବଙ୍କ ଦର୍ଶନକୁ ଯାନ୍ତି । ସାମୟିକ କନ୍ଦନା ଗଡଠାରେ ବଡମ୍ବା ରାଜାଙ୍କ ସହିତ ଦେଖା ହୁଏ । ଉଭୟେ କୁମରଙ୍ଗିଆ ପାହାଡରେ ବୁଲି ଶିକାର କରନ୍ତି ।

**୫ । ପ୍ରଧାନ ପ୍ରଧାନ ହାଟ—**

ଚର୍ଚ୍ଚିକା, ପାଟପୁର, ତୁଳସୀପୁର, କଳାପଥର, ଓ ଘୋଲପୁର । ପାଟପୁର ହାଟ ବ୍ୟତୀତ ଅନ୍ୟ ହାଟଗୁଡ଼ିକ ବର୍ତ୍ତମାନ ବସୁଅଛି ।

**୬ । ପ୍ରାକୃତିକ ଦୃଶ୍ୟ—**

ବାଙ୍କୀରେ ପ୍ରାକୃତିକ ଶୋଭା ଅତୁଳନୀୟ । ବିଶେଷତଃ ଚର୍ଚ୍ଚିକା ଡାକ ବଙ୍ଗଳାଠାରେ ଠିଆ ହେଲେ ମହାନଦୀର ଅପୂର୍ବ ଶୋଭା,

ବଡ଼ମ୍ବାର କୁମରଙ୍ଗିଆ ପାହାଡ଼ ଏବଂ ଢେଙ୍କାନାଳର ଅଷ୍ଟାଙ୍ଗ ସପ୍ତଶଯ୍ୟା ପର୍ବତ ଦର୍ଶକର ନୟନମନ ତୃପ୍ତ କରିଦିଏ । ଅନେକ ସାହେବ ଏ ବଙ୍ଗଳାକୁ ବଡ଼ ପସନ୍ଦ କରନ୍ତି ।

ବାଙ୍କୀର ବର୍ତ୍ତମାନ ରାଜଧାନୀ ଚର୍ଚ୍ଚିକା । ଏଠାରୁ କଟକ, ଖୋର୍ଦ୍ଧା ଓ ସୋନପୁରକୁ ସଡ଼କ ଅଛି । ବୈଦ୍ୟେଶ୍ୱରଠାରୁ କଳାପଥରକୁ ଓ କଳା-ପଥରଠାରୁ ଖୋର୍ଦ୍ଧାକୁ ସଡ଼କ ଅଛି । ଚର୍ଚ୍ଚିକାରେ କଚେରୀ, ଥାନା, ଜେଲଖାନା, ଡାକଘର, ହାଇସ୍କୁଲ, ବ୍ୟାଙ୍କ୍ ଅଫିସ୍, ଡାକ୍ତରଖାନା, ଓ ହାଟ ବଜାର ଆଦି ରହିଅଛି ।

ଚର୍ଚ୍ଚିକା ଠାକୁରାଣୀଙ୍କ ପୀଠ ଅତ୍ୟନ୍ତ ମନୋମୁଗ୍ଧକର । ଏଠାରେ କ୍ଷଣମାତ୍ର ବିଶ୍ରାମ କଲେ ଚଞ୍ଚଳ ମନ ସ୍ଥିର ହୋଇଯାଏ । ଏହି ଠାକୁରାଣୀଙ୍କ ପଣାଯାତ୍ରା ଅତି ଚମତ୍କାର । ସେ ଦିନ ଝାମୁଆମାନେ ନିଆଁ ଉପରେ ଚାଲନ୍ତି । ଏହାକୁ ଝାମୁ ବୋଲାଯାଏ । ଏକଶ କୋଡ଼ିଏ ହାତ ପର୍ଯ୍ୟନ୍ତ ପୂର୍ବେ ପାଟୁଆ ଓ ଅରଟ ବୁଲା କାର୍ଯ୍ୟ ଏଠାରେ ହେଉଥିଲା । ଏହି ଯାତ୍ରା ଦୁଇ ମାସ ପର୍ଯ୍ୟନ୍ତ ବସେ । ଅନେକ ଦ୍ରବ୍ୟର କାରବାର ମଧ୍ୟ ହୁଏ ।

ବାଙ୍କୀର ମଧ୍ୟଭାଗରେ ମହାପର୍ବତ ନାମକ ଏକ ପର୍ବତ ଅଛି । ଏହି ପର୍ବତକୁ ଲାଗି ତାଠାରୁ ସାନ ଆଉ ଗୋଟିଏ ପର୍ବତ ଅଛି । ଅନେକେ ଏହାକୁ "ମାମୁଁ ଭଣଜା" ବୋଲି କହନ୍ତି । ମହାପର୍ବତର ଶିଖର ଦେଶରେ ଚତୁର୍ମାସ୍ୟା ଦିନରେ ଲୋକେ ମହୋତ୍ସବ କରିବାକୁ ଯାନ୍ତି । ଏଠାରୁ ପୁରୀର ବଡ଼ ଦେଉଳ ଦେଖାଯାଏ । ପର୍ବତଟି ଟାଙ୍ଗରା । ସେପରି କିଛି ମୂଲ୍ୟବାନ୍ କାଷ୍ଠ ମଧ୍ୟ ଏଥିରେ ଜନ୍ମେ ନାହିଁ । କେବଳ ସ୍ଥାନେ ସ୍ଥାନେ ଆଉ ଶ୍ରୀ, ବେତ ବଣ ଓ ଅଁଳାକୋଳି ଗଛ ଦେଖାଯାଏ । ପର୍ବତର ଉପରି ଭାଗରେ ଗୋଟିଏ ଗଭୀର ଖାତ ଅଛି । ଏକ ସମୟରେ ଏହା ହୀରକ ଖଣି ଥିଲା ବୋଲି ଲୋକେ କହନ୍ତି । ଆହୁରି ମଧ୍ୟ କେହି କେହି ପୂର୍ବେ ଏହା ଆଗ୍ନେୟଗିରି ଥିବାର ଅନୁମାନ କରନ୍ତି । ଏହାର ଉଚ୍ଚତା ପ୍ରାୟ ଏକ ହଜାର ଫୁଟ ହେବ ।

ସରଣ୍ଡାର ଅଂଶୁପା ହ୍ରଦ ଗୋଟିଏ ଦର୍ଶନୀୟ ବସ୍ତୁ । ଏଠାକୁ ଅନେକ ଲୋକ ଦେଖିବାକୁ ଆସନ୍ତି । ହ୍ରଦଟି ଦକ୍ଷିଣ ଉତ୍ତରରେ ଏକ କୋଶ ଲମ୍ବା ଏବଂ ପୂର୍ବ ପଶ୍ଚିମରେ ଏକ ମାଇଲ୍ ଓସାର ହେବ । ଜଳ ଅତି ସ୍ୱଚ୍ଛ ଓ ସ୍ୱାସ୍ଥ୍ୟକର । ଏଥିରେ ପ୍ରଚୁର ପରିମାଣରେ ମାଛ ମିଳେ । ଏହି ମାଛ ଆଠଗଡ଼, ଖୋର୍ଦ୍ଧା, କଟକ ଓ ଢେଙ୍କାନାଳ ପର୍ଯ୍ୟନ୍ତ ରପ୍ତାନି ହୁଏ ।

୭ । **ପ୍ରସିଦ୍ଧ ଦେବାଳୟ—**

ଚର୍ଚ୍ଚିକା ଠାକୁରାଣୀ, ସିଂହନାଥ, ଜଗନ୍ନାଥ (ମହିମାମଣି), ଚକ୍ରସ୍ୱା ଦେବ, ଚୈତନ୍ୟ, କନକ ଦୁର୍ଗା, ବୈଦ୍ୟନାଥ, ରାମନାଥ ।

୮ । **ମଠ—**

ପାଣିକୋରଣ୍ଡ, କେନ୍ଦୁପଲ୍ଲୀ, କାଳୀପୋଇ, ଗଉଡ଼ଛେଲ, ଚଗ୍ରମାରୁ, ଖମାରଙ୍ଗ । ବଳଭଦ୍ରପୁର ଓ ବୈଦ୍ୟେଶ୍ୱରରେ ସଦାବ୍ରତ ମଠମାନ ରହିଅଛି । ଏମାନଙ୍କ ମଧ୍ୟରେ ପାଣିକୋରଣ୍ଡ ଓ କେନ୍ଦୁପଲ୍ଲୀ ପ୍ରଧାନ ।

୯ । **ବାଙ୍କୀର ଅଡ଼େଣି ସଂଖ୍ୟା ନଥ—**

ଯଥା: —

ନରଗାଙ୍ଗ୍, ପୂର୍ବଦର୍ଗ, ଘାସିପଡ଼ା, ସରଣ୍ଡା, ଉତ୍ତର କୂଳ, ଗଣ୍ଡିବେଢ଼, ବୈଦ୍ୟେଶ୍ୱର, ପୁଇଷ୍ଟା ଓ ମଧୂଆ ପଲ୍ଲୀ ।

୧୦ । **ଖମାର—**

ଖମାର ମଧ୍ୟରେ ପାଟପୁର, ଡିଂସର, ବ୍ରହ୍ମପୁର ଓ ଖଲପଲ୍ଲୀ ପ୍ରଧାନ ।

---

# ଦ୍ୱିତୀୟ ଅଧ୍ୟାୟ

## ପ୍ରାଚୀନ ବାଙ୍କୀ ଓ ଧଳବଂଶୀୟ ରାଜାଗଣ

ବାଙ୍କୀ ଏପରି ନାମ କାହିଁକି ହେଲା, ସେ ବିଷୟରେ କୌଣସି ଐତିହାସିକ ତତ୍ତ୍ୱ ମିଳୁ ନାହିଁ । ତେବେ ଅନୁମାନ କରାଯାଏ, ଏ ରାଜ୍ୟର

ଚତୁଃସୀମା ବନ; ସେଥିଲାଗି ଏହାକୁ ବନ ଦୁର୍ଗ କହନ୍ତି । ସେହି ବନ-ଦୁର୍ଗରୁ ବଙ୍କାଗଡ଼ ଓ କାଳକ୍ରମେ ବଙ୍କାଗଡ଼ରୁ ବାଙ୍କୀ ଗଡ଼ର ଉତ୍ପତ୍ତି ହୋଇଅଛି । ପ୍ରାଚୀନ ବାଙ୍କୀର ସୀମା ସରହଦ ସେପରି କିଛି ନ ଥିଲା କିମ୍ବା ସେତେବେଳେ ଏଥିରେ କୌଣସି ରାଜା ରାଜପଣ କରୁଥିବାର ମଧ୍ୟ ପ୍ରମାଣ ମିଳେ ନାହିଁ । "ବାଙ୍କୀରାଜ୍ୟ ବର୍ଣ୍ଣନା" ଶୀର୍ଷକ ପ୍ରବନ୍ଧରୁ ଜଣାଯାଏ ଯେ, ପ୍ରଥମେ ଏ ରାଜ୍ୟର ରାଜା କିଏ, ସେ ବିଷୟରେ କିଛି ନିଶ୍ଚିତ ତତ୍ତ୍ୱ ଜଣା ନାହିଁ । ମାତ୍ର ଶୁଣାଯାଏ ଯେ, ପ୍ରଥମେ ତାହାଲଆମାନେ ଏ ଦେଶ ଶାସନ କରୁଥିଲେ । ସେମାନେ ଭ୍ରମଣକାରୀ ଓ ଲୁଣ୍ଠନପ୍ରିୟ ଥିବାରୁ ପ୍ରଜାପୀଡ଼କ ଆଖ୍ୟା ପାଇଥିଲେ । ସେମାନଙ୍କ ରାଜତ୍ୱ ସମୟରେ ପ୍ରଜାଗଣ ଘୋର ଅଶାନ୍ତିରେ କାଳ ଯାପନ କରୁଥିଲେ । ସେମାନଙ୍କ ସଂପତ୍ତି ଓ ଜୀବନ କଦାପି ନିରାପଦ ନ ଥିଲା । ସେତେବେଳେ ଓଡ଼ିଶାର ସୀମା ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଏଥିରୁ ଅନୁମାନ କରାଯାଏ, ଏ ବୃତ୍ତାନ୍ତ ବୋଧ ହୁଏ ଗାଙ୍ଗପତ୍ର ଅନଙ୍ଗଭୀମଦେବଙ୍କ ସମୟର କଥା ହୋଇଥିବ ।

ଅନନ୍ତର ପଶ୍ଚିମାଞ୍ଚଳବର୍ତ୍ତୀ ଧଳଭୂମ୍ ନିବାସୀ ବଳଭଦ୍ର ଧଳ ନାମକ ଜଣେ କ୍ଷତ୍ରିୟ ଶ୍ରୀ ଜଗନ୍ନାଥଙ୍କ ଦର୍ଶନ କରିବା ଉଦ୍ଦେଶ୍ୟରେ ପୁରୀଧାମକୁ ଆଗମନ କଲେ । ତାଙ୍କ ସହିତ ଜଣେ ବ୍ରାହ୍ମଣ ମଧ୍ୟ ଓଡ଼ିଶାକୁ ଆସି-ଥିଲେ । ଉଭୟେ ଜଗନ୍ନାଥ ଦର୍ଶନ ପରେ ଶ୍ରୀ ଚର୍ଚ୍ଚିକା ଠାକୁରାଣୀଙ୍କ ବିଷୟ ଶୁଣିପାରି ତାଙ୍କୁ ଦର୍ଶନ କରିବା ଇଚ୍ଛାରେ କିଛି ମହାପ୍ରସାଦ ଧରି ପାଟଣାସ୍ଥ ପଥରେ ବାଙ୍କୀ ପ୍ରତି ଅଗ୍ରସର ହେଲେ । ସେତେବେଳେ ଏ ପଥ ନିରାପଦ ନ ଥିଲା । ପଥମଧ୍ୟରେ ଶ୍ୱାପଦସଙ୍କୁଳ ବନଭୂମି ବନ୍ୟଦସ୍ୟୁ-ମାନଙ୍କ ଦ୍ୱାରା ଆହୁରି ଭୟଙ୍କର ହୋଇଥିଲା । ଉଭୟେ ବହୁ କଷ୍ଟରେ ଚର୍ଚ୍ଚିକାଙ୍କୁ ଦର୍ଶନ କରି ମହାପ୍ରସାଦ ସମର୍ପଣ କଲେ । ବଳଭଦ୍ର ମହାବୀର ଥିଲେ । ବାଙ୍କୀ ଅରାଜକ ହୋଇ ପଡ଼ିଛି, ସେଥିଲାଗି ତାଙ୍କ ମନରେ ରାଜ୍ୟ-ଲିପ୍ସାର ପ୍ରବଳ ଝଞ୍ଜା ବହିଗଲା । ସେ ଚର୍ଚ୍ଚିକାଙ୍କ ଅନୁସରଣରେ ରହିଲେ ।

ଏନେ ରାତିରେ ବଳଭଦ୍ର ନିଦ୍ରିତ ହୋଇଛନ୍ତି, ଦେଖିଲେ ଜଣେ ଅପୂର୍ବ ଲାବଣ୍ୟବତୀ ରମଣୀ ତାଙ୍କୁ ଗୋଟିଏ ରତ୍ନ ତାଟଙ୍କ ଦେଇ ଦେଇ କହୁଛନ୍ତି, "ବତ୍ସ, ନିଅ ଏ ତାଟଙ୍କ। ଗଜପତିଙ୍କୁ ଦେଖାଇବା ମାତ୍ରେ ତୁମ୍ଭର ଅଭିଳାଷ ପୂର୍ଣ୍ଣ ହେବ।" ବଳଭଦ୍ରଙ୍କର ହଠାତ୍ ନିଦ୍ରାଭଙ୍ଗ ହେଲା। ସେ ବ୍ରାହ୍ମଣଙ୍କୁ ଡାକି କହିଲେ, "ଦେଖ, ମୋତେ ଜଣେ ରମଣୀ ଏ ତାଟଙ୍କଟି ଦେଇ ଗଜପତିଙ୍କ ଛାମୁକୁ ଯିବା ପାଇଁ ଅନୁରୋଧ କରିଛନ୍ତି। ଏଥିରେ ମୋର ମନକାମନା ପୂର୍ଣ୍ଣ ହେବ ବୋଲି ମଧ୍ୟ ଆଦେଶ କରିଛନ୍ତି।" ବ୍ରାହ୍ମଣ ଏଥିରେ ଆଶ୍ଚର୍ଯ୍ୟାନ୍ୱିତ ହୋଇ କହିଲେ, "ଏହା ନିଶ୍ଚୟ ଚର୍ଚ୍ଚିକା ଦେବୀଙ୍କ ଆଦେଶ। ଆପଣ କାଳ ବିଳମ୍ବ ନ କରି ଶୀଘ୍ର ପୁରୀଧାମକୁ ଚାଲନ୍ତୁ।"

ଅନନ୍ତର ଉଭୟେ ବହୁ କଷ୍ଟରେ ପୁରୀଧାମକୁ ଫେରିଲେ। ବଳଭଦ୍ର ଗଜପତିଙ୍କ ଛାମୁରେ ସମସ୍ତ କଥା ଆମୂଳ ବର୍ଣ୍ଣନ କରିଗଲେ। ଗଜପତି ଓ ସଭାସଦ୍‌ମାନେ ଉତ୍ତର କଲେ, "ଯଦି ଚର୍ଚ୍ଚିକାଙ୍କର ଏ ଆଦେଶ ବୋଲି ଆପଣ କହୁଛନ୍ତି, ତେବେ ତାର ସଂକେତ ସ୍ୱରୂପ କଅଣ ଆଣିଛନ୍ତି ?" ବଳଭଦ୍ର ଆନନ୍ଦମନରେ ସେହିକ୍ଷଣି ରତ୍ନ ତାଟଙ୍କଟି ଗଜପତିଙ୍କ ଶ୍ରୀହସ୍ତକୁ ବଢ଼ାଇ ଦେଲେ। ରାଜା ଆଶ୍ଚର୍ଯ୍ୟାନ୍ୱିତ ହୋଇ ରତ୍ନ ତାଟଙ୍କ ସହି ଅନ୍ତଃପୁରକୁ ବିଜେ କଲେ। ଏ ରତ୍ନ ତାଟଙ୍କ କାହିଁ ପାଇଛନ୍ତି ବୋଲି ରାଣୀ ପ୍ରଶ୍ନ କଲାରୁ ଗଜପତି ବଳଭଦ୍ର ଧଳଙ୍କର ସମସ୍ତ ଘଟଣା ବର୍ଣ୍ଣନ କରିଗଲେ। ରାଣୀ କହିଲେ, "ମହାରାଜ, ଉତ୍କଳର ମଉଡ଼ମଣି, ପଟ୍ଟମାଯ ତାଟଙ୍କରେ କପରି ବିଶ୍ୱାସ କରୁଛନ୍ତି ? ତାଙ୍କୁ କହନ୍ତୁ, ସେ ପୁନର୍ବାର ଫେରିଯାଇ ଠିକ୍ ଅବିକଳ ଏହି ତାଟଙ୍କ ପରି ଆଉ ପଟେ ଆଣି ଦିଅନ୍ତୁ।"

ଗଜପତି ରାଣୀଙ୍କୁ ପ୍ରଶଂସା କରି ଫେରିଲେ। ବଳଭଦ୍ରଙ୍କୁ ସେହିକ୍ଷଣି ଆଦେଶ ହେଲା, "ତୁମ୍ଭର ଏ କଥାରେ ମହାରାଜ ଦୃଢ଼ ବିଶ୍ୱାସ କରୁ ନାହାନ୍ତି। ତୁମ୍ଭେ ଏଠାରୁ ଫେରି ଯାଇ ଅବିକଳ ଏହି ତାଟଙ୍କ ପରି ଆଉ ପଟେ ଆଣି ଦେଲେ ତୁମ୍ଭଙ୍କୁ ନିଶ୍ଚୟ ବାଙ୍କୀରାଜ୍ୟ ଶାସନର ସନନ୍ଦ ଦିଆଯିବ।"

ବଲଭଦ୍ର ବିମର୍ଷରେ ଫେରିଲେ । ପୁନର୍ବାର ବ୍ରାହ୍ମଣଙ୍କ ସହିତ ସେହି ଦୁର୍ଗମ ପଥ ଅତିକ୍ରମ କରି ଚର୍ଚ୍ଚିକାଙ୍କୁ ଅନୁସରଣ କଲେ । ଭାଗ୍ୟବଶତଃ ତାଙ୍କୁ ଆଉ ଥରେ ତାହାଙ୍କ ମିଳିଲା । ସେ ଆନନ୍ଦମନରେ ପୁଷ୍ପ ପ୍ରତ୍ୟାବର୍ତ୍ତିନ କରି ବାଙ୍କୀ ଶାସନର ସନନ୍ଦ ପାଇଲେ । ସେହିଠାରୁ ଧଳ ବଂଶର ସୂତ୍ରପାତ ହେଲା । ଏହିପରି ଏଗାର ପୁରୁଷ ପର୍ଯ୍ୟନ୍ତ ଧଳ ବଂଶୀୟ ରାଜାମାନେ ରାଜତ୍ୱ କରିଥିଲେ । ନିମ୍ନରେ ସେମାନଙ୍କର ବଂଶଲତା ଦିଆଗଲା:—

୧ ବଲଭଦ୍ର

୨ ଅର୍ଜ୍ଜୁନ

୩ ଯୁଧିଷ୍ଠିର

୪ ଶ୍ରୀରାମଚନ୍ଦ୍ର

୫ ସିଂହ

୬ ପୁରୁଷୋତ୍ତମ

୭ ଶିରସ୍କନ୍ଦ

୮ ଜଗନ୍ନାଥ

୯ ନୃସିଂହ ବା ନରସିଂହ

୯ ନୃସିଂହ ବା ନରସିଂହ

୧୦ କେଶରୀ

୧୧ ହୃଷୀକେଶ

୧୨ ମଧୂଶ୍ରପୁ

* ୧୩ ମୂଳି

କାଳନ୍ଦୀ | ହରି | ମାର୍କଣ୍ଡେୟ | ରବ ୧୪

ଗମେଇ ୧୫

ବଳଭଦ୍ର ଧଳଙ୍କ ସମୟଠାରୁ ହୃଷୀକେଶ ଧଳଙ୍କ ପର୍ଯ୍ୟନ୍ତ ବାଙ୍କୀରେ କି କି ବିଶେଷ ଘଟନା ଘଟିଥିଲା, ତାର କୌଣସି ପ୍ରମାଣ ଏପର୍ଯ୍ୟନ୍ତ ମିଳି ନାହିଁ ।

ହୃଷୀକେଶଙ୍କ ପୁଅ ମଧୂଶ୍ରପୁ ବଡ଼ ଉଦ୍ଦାମ ଓ ରଣକୁଶଳ ଥିଲେ । ତାଙ୍କର ଶରନ୍ତ ଭୁବନ-ବିଖ୍ୟାତ । ଏପରି କି କାଣ୍ଡ ଶନ୍ଧିବା ଓ ଲକ୍ଷ୍ୟ-ଭେଦ କରିବା ପ୍ରଭୃତିରେ ନିଜ ସମକକ୍ଷ ପ୍ରତିଦ୍ୱନ୍ଦ୍ୱୀ କାହାରିକୁ ପାଇ ନ ଥିଲେ । ଏଥିଲାଗି ଗଜପତିଙ୍କ ସହିତ ତାଙ୍କର ମନ ମିଳୁ ନ ଥିଲା ।

* କେହି କେହି ମୂଳିଆଧଳଙ୍କଠାରୁ ଶ୍ରୀଚନ୍ଦନ ବଂଶ ଆରମ୍ଭ ହୋଇ କହନ୍ତି; ମାତ୍ର ରାଜବଂଶାବଳୀରୁ ସେପରି କିଛି ପ୍ରମାଣ ଆମ୍ଭେମାନେ ପାଇ ନାହୁଁ ।

ସେ ପ୍ରତି କାର୍ଯ୍ୟରେ ତାଙ୍କର ପ୍ରତିବାଦ କରୁଥିଲେ । ଏହାର ପ୍ରତିଫଳ ସ୍ୱରୂପ ଗଜପତି ତାଙ୍କୁ ପଇତା-ଧେନା ଚୋଠରେ ଗନ୍ଧାପର୍ଦ୍ଦ ବନ୍ଦ ହାଣି ପକାଇଲେ । ସେ ମୁଣ୍ଡ ବାରବାଟୀ କିଲ୍ଲା ତଳେ ଲଗିଲା । ସର୍ଦ୍ଦାର ଗଜପତିଙ୍କ ଶ୍ରୀ ଛାମୁରେ ନିବେଦନ କଲା, "ମହାରାଜ, ବାଙ୍କୀରାଜାଙ୍କ ମସ୍ତକ ବାରବାଟୀ କିଲ୍ଲା ତଳେ ଲଗିଛି ।"

"ବାଙ୍କୀ ରାଜବଂଶାବଳୀ" ଶୀର୍ଷକ ପ୍ରବନ୍ଧରୁ ଜଣାଯାଏ ଯେ, ମହାରାଜା ଏହା ଜାଣି ପାରି ବାଙ୍କୀ ପୃଥକ୍ ସରକାର କରିଦେଲେ । ତାହା କେଉଁ ସରକାର ( ଇଂରେଜ କି ଖୋଦ୍ ରାଜସରକାର ) ନିର୍ଦ୍ଧାରଣ କରିବା କଠିନ । ପୁଣି ଜଣାଯାଏ ଯେ, ମଧୁରିପୁଙ୍କ ପୁଅ ମୂଲିଆ ଧଳ ମୁକ୍ତାର ଏ ରାଜ୍ୟ ଫେରି ପାଇଥିଲେ । ତେବେ ଏଥିରୁ ପ୍ରତୀତ ହେଉଅଛି, ତାହା ଅନ୍ୟ କୌଣସି ସରକାର ନୋହି ଖୋଦ୍ ରାଜସରକାର ହୋଇଥିବ ।

ମଧୁରିପୁଙ୍କ ମୃତ୍ୟୁ ଉତ୍ତାରେ ତାଙ୍କ ଗର୍ଭବତୀ ରାଣୀ ମୁକ୍ତା ଦେଈ ଗୋଟିଏ ପୁତ୍ର ପ୍ରସବ କରିଥିଲେ । ମାତା ଓ ଶିଶୁ ଗଡ଼ ପରିତ୍ୟାଗ କରି ଚର୍ଚ୍ଚିକା ଗ୍ରାମର ଗୋଟିଏ ଅଠଗଡ଼ିଆ ଘରେ ଆଶ୍ରୟ ନେଇ ଥାନ୍ତି । ଆଠଗଡ଼ଆଟି ରାଣୀଙ୍କୁ କନ୍ୟାନିର୍ବିଶେଷରେ ପାଳନ କରିଥାଏ । କ୍ରମେ ଶିଶୁର ବୟସ ବୃଦ୍ଧି ହେବାକୁ ଲଗିଲା । ମାଆଙ୍କର ଏ ସନ୍ତାନ ଗର୍ଭରେ ଥାଉଥାଉ ମୂଳ ବୁଡ଼ିଯିବାରୁ ସଙ୍କୋଚିତ ନାମ ନ ଦେଇ ସେ "ମୂଳିଆ" ବୋଲି ପୁଅକୁ ସାଧାରଣତଃ ଡ଼ାକୁଥିଲେ । ସେ ରାଜା ହେଲେ ମଧ୍ୟ ମାତୃପ୍ରଦତ୍ତ ମୂଳିଆ ଧଳ ନାମରେ ରାଜସିଂହାସନ ଅଲଂକୃତ କରିଥିଲେ । କ୍ଷତ୍ରିୟ ସନ୍ତାନ କେତେ ଦିନ ଆତ୍ମଗୋପନ କରି ରହିପାରିବ ? ଦିନେ କୌତୂହଳ ପରବଶ ହୋଇ ମୂଳିଆ ଧଳେ ମାଆଙ୍କୁ ପିତାଙ୍କର ପରିଚୟ ମାଗିଲେ । ରାଣୀ ଅଶ୍ରୁପୂର୍ଣ୍ଣ ନୟନରେ ସମସ୍ତ ବୃତ୍ତାନ୍ତ ବର୍ଣ୍ଣନ କରିଗଲେ । ବୀରରକ୍ତରେ ଏ ଅପମାନ ସହ୍ୟ ହୋଇ ପାରିଲା ନାହିଁ । ତହୁଁ ସେ କେତେକ ଲୋକଙ୍କ ସାହାଯ୍ୟରେ ବାଙ୍କୀ ଓ ଓଡ଼ିଶାର ଦୋସମାଲି ଜାଗାରେ ବାଟମାରଣା (ଦସ୍ୟୁବୃତ୍ତି) ଆରମ୍ଭ କଲେ । ଗଜପତି ଏ ବିଦ୍ରୋହ

ନିର୍ବାପନ ନିମନ୍ତେ ବହୁ ସୈନ୍ୟ ପଠାଇଲେ । ତୁଇ ଦିନବ୍ୟାପୀ ଉଭୟ ଦଳ ମଧ୍ୟରେ ଘୋର ଯୁଦ୍ଧ ହୋଇଥିଲା । ପରିଶେଷରେ ମୂଳିଆ ଧଳ ବନ୍ଦୀରୂପେ ଗଜପତିଙ୍କ ସମ୍ମୁଖକୁ ଆନୀତ ହେଲେ । ଗଜପତି ପ୍ରଶ୍ନ କଲେ, "ତୁମେ କି ସାହସରେ ଏ ଉପଦ୍ରବ ଆରମ୍ଭ କରି ଅଶାନ୍ତିର ସୂତ୍ରପାତ କରୁଥିଲ ?" ବନ୍ଦୀ ଉତ୍ତର କଲେ, "ଯେ ମୋ ପିତାଙ୍କୁ ସ୍ୱହସ୍ତରେ ବଧ କରିଛି ଏବଂ ମୋର ପୈତୃକ ସଂପତ୍ତି ବଳପୂର୍ବକ ଅପହରଣ କରି ନେଇଛି, ମୋର ଆଉ ତା ପ୍ରତି କର୍ତ୍ତବ୍ୟ କଣ ? ଆପଣ ଓଡ଼ିଶାର ମହାମାନ୍ୟ-ମଣି । ଠିକ୍ ଯଦି ଏହି ଅବସ୍ଥା ଆପଣଙ୍କର ହୋଇଥାନ୍ତା, ତେବେ କି ଉପାୟ ଅବଲମ୍ବନ କରନ୍ତେ, ନିର୍ଦ୍ଧାରଣ କରନ୍ତୁ ।" ଗଜପତି ଯୁଗପତ୍ ବିସ୍ମିତ ହୋଇ ପଚାରିଲେ, "ତୁମେ କିଏ ? କି ହେତୁ ଏ କାର୍ଯ୍ୟ କରୁଥିଲ ?" ବନ୍ଦୀ ପୁନର୍ବାର ଗମ୍ଭୀର ସ୍ୱରରେ କହିଲେ, "ଆପଣ ଯେଉଁ ମଧୁଶିପୁଙ୍କୁ ସ୍ୱହସ୍ତରେ ବିନାଶ କରିଅଛନ୍ତି, ମୁଁ ସେହି ବାଙ୍କୀ ରାଜାଙ୍କର ପ୍ରକୃତ ଉତ୍ତରାଧିକାରୀ ।"

ଗଜପତି ଏଥିରେ ଆହୁରି ବିସ୍ମିତ ହେଲେ ଏବଂ ସେହିକ୍ଷଣି ତାଙ୍କୁ ମୁକ୍ତି ଦେଇ ଘାସିପଡ଼ାରୁ ବାଇଶି ବାଟୀ ଜମି ଖଞ୍ଜିଦେଲେ । ଆନନ୍ଦରେ ମୂଳିଆ ଧଳ ଫେରିଆସି ଖିମାରଙ୍ଗ ଗ୍ରାମ ନିକଟରେ ବାସ କଲେ । କିଛି ଦିନ ପରେ ମୃକ୍ତା ଦେଈ ଜଗନ୍ନାଥଙ୍କୁ ଦର୍ଶନ କରିବାକୁ ଯାଇ ଗଜପତିଙ୍କ ପାଟ ମହାଦେଈଙ୍କ ସହିତ ସାକ୍ଷାତରେ ନାନା ପରାମର୍ଶ କରି ସ୍ୱରାଜ୍ୟ ପୁନଶ୍ଚ ଫେରାଇ ଆଣିଲେ । ଗଜପତିଙ୍କ ଆଦେଶକ୍ରମେ ଦେୱାନ ଓ ବକ୍ସି ଉଭୟେ ମୂଳିଆ ଧଳଙ୍କୁ ବାଙ୍କୀ ସିଂହାସନରେ ଅଭିଷିକ୍ତ କରି ଦେଇ ଗଲେ ।

ମୂଳିଆ ଧଳଙ୍କ ରାଜତ୍ୱରେ ବାଙ୍କୀରେ ଅନେକଗୁଡ଼ିଏ ବିଶେଷ ଘଟଣା ଘଟିଥିଲା । ତନ୍ମଧ୍ୟରେ "ଧୋବେଇ ଗୁରୁ" ମନ୍ଦିର ନିର୍ମାଣ, ଚର୍ଚ୍ଚିକାଙ୍କ ପଣାଯାତ୍ରା, ଅରଟି ଚୁଲି ଓ ଝାମୁଯାତ୍ରା ପ୍ରଭୃତି ପ୍ରଧାନ । ଏହା ଛଡ଼ା ପାଟପୁରର ସିଂହନାଥ ଦେବଙ୍କ ଶୀତଳଷଷ୍ଠୀ ଯାତ୍ରା, ବ୍ରାହ୍ମଣ ଭୋଜ ଏସବୁ ମଧ୍ୟ ମୂଳିଆ ଧଳଙ୍କ କୀର୍ତ୍ତି ।

'ଧୋବେଇ ଗୁରୁ'ଙ୍କ ସ୍ଥାପନ ବିଷୟରେ ଯେ ସବୁ ପ୍ରବାଦ ଓ କିମ୍ବଦନ୍ତୀ ମିଳେ, ସେ ସବୁ ଏଠାରେ କହିବା ଅନାବଶ୍ୟକ । ତେବେ ଯାହା ବିଶ୍ୱାସଯୋଗ୍ୟ ଓ କେତେକ ପରିମାଣରେ ଅନୁମାନସିଦ୍ଧ, ତାହା ନିମ୍ନରେ ବିବୃତ ହେଲା ।

ମୂଳିଆ ଧଳ ଦିନେ ଖମାରଙ୍ଗଠାରୁ ବାହାରି ମୃଗୟା ଉଦ୍ଦେଶ୍ୟରେ ଭ୍ରମଣ କରୁଥିଲେ । କୌଣସି ନିଶ୍ଚିତ ସ୍ଥାନରେ ଦୁର୍ଗ ନିର୍ମାଣ କଲେ ସେ ଆନନ୍ଦରେ ରହିପାରିବେ, ଏହା ମଧ୍ୟ ତାଙ୍କ ଭ୍ରମଣର ଅନ୍ୟ ଉଦ୍ଦେଶ୍ୟ ଥିଲା । ବୁଲି ବୁଲି ମାଳତୀମୁଣ୍ଡିଆଠାରେ ତାଙ୍କ ମନ କି ଭାବରେ ଆକୃଷ୍ଟ ହେଲା କେଜାଣି, ସେହିଠାରେ ସେ ଦୁର୍ଗ ନିର୍ମାଣ କରିବା ପାଇଁ ଆଶା ବଳାଇଲେ । ସ୍ଥାନର ମାହାତ୍ମ୍ୟ ଅବା କାହାଠାରୁ ବୁଝିବେ ? ସେ ତ ଏକାକୀ, ସଙ୍ଗରେ ସେପରି କେହି ନାହିଁ । ଚତୁର୍ଦ୍ଦିଗ ନିରୀକ୍ଷଣ କଲେ, ବନଭୂମିରେ ମଧ୍ୟ କାହାରିକୁ ଦେଖି ପାରିଲେ ନାହିଁ । ଅଳ୍ପ ଦୂରରେ କାଠହଣା ଶବ୍ଦ ଶୁଣିପାରି ସେଠାକୁ ଗଲେ । ଦେଖିଲେ, ଗୋଟିଏ ଧୋବା କାଠ ହାଣୁଛି । ଧୋବା ଏହାଙ୍କୁ ରାଜା ବୋଲି ଜାଣେ ନାହିଁ । ହଠାତ୍ ମୂଳିଆ ଧଳ ତାଙ୍କୁ ପଚାରିଲେ, "ଆଜ୍ଞା, ଏଠାରେ ଦୁର୍ଗ ପ୍ରସ୍ତୁତ କଲେ ଭଲ ହୁଅନ୍ତା କି ?" ଧୋବା ଏ କଥା ଶୁଣି ତାଙ୍କୁ ରାଜା ବୋଲି ଜାଣିପାରି କହିଲା, "ଆଜ୍ଞା, ଏ ମାଟି ଗଡକୁ ସାଜେ; କାରଣ ଏ ଖଣ୍ଡିଚକଡ଼ାରେ ଏ ମାଟିଭଳି ଗାରମାଟି ଖଣ୍ଡେ ନାହିଁ ।"

ରାଜା ପୁନଶ୍ଚ କାହିଁକି ବୋଲି ପ୍ରଶ୍ନ କଲେ । ଧୋବା କହିଲା, "ଏଇଠାରେ ପରା ଗୋଟାଏ ସଞ୍ଚାଣକୁ ବଗଟାଏ ମାଡ଼ିବସିଲା !" ରାଜା ଆହୁରି ଆଶ୍ଚର୍ଯ୍ୟ ହୋଇ ପଚାରିଲେ "କେଉଁ ଜାଗାଟା କହିଲୁ ?" ଧୋବା ମୁଣ୍ଡ ନୁଆଁଇ ହଠାତ୍ ସେ ଜାଗାକୁ ଠାରିଦେବା ମାତ୍ରେ ରାଜା ତାକୁ ହାଣିବାକୁ ଉଦ୍ୟତ ହେଲେ । ଧୋବା କହିଲା, "ତୁମ୍ଭଙ୍କର ମୁଣ୍ଡରେ ଅଧିକାର । ତେବେ ଏତିକି କହୁଛି, ଯଦି ମୋତେ ମାରନ୍ତି, ତେବେ ମୋର ନାମାନୁସାରେ ଏଠାରେ ଦୁର୍ଗାଧିଷ୍ଠାତ୍ରୀ ଦେବୀଙ୍କୁ ସ୍ଥାପନ କରିବେ ।" ରାଜା

ସେଥିରେ ସମ୍ମତ ହେଲେ । ଧୋବାଠାରୁ ଗଣ୍ଡ କରିବା ଲାଗି ଉପଦେଶ ପାଇଥିବାରୁ ସେ ଠାକୁରାଣୀଙ୍କ ନାମ 'ଧୋବେଇ-ଗୁରୁ' ରଖାଗଲା । ବର୍ତ୍ତମାନ ସେ ସ୍ଥାନରେ ଦେଉଳର ଭଗ୍ନାବଶେଷ ଦୃଷ୍ଟିଗୋଚର ହୁଏ ଏବଂ ଦେଖା ପଡରେ ସେଠାରେ ଆଜଯାଏ ମଧ୍ୟ ବଳି ପ୍ରଭୃତି ଅର୍ପିତ ହେଉଅଛି ।

ମୂଳଧଳଙ୍କର ଗୋଟିଏ ପୁତ୍ର ଥିଲେ । ତନ୍ମଧ୍ୟରେ ରବ ଧଳ ଜ୍ୟେଷ୍ଠ ଥିବାରୁ ପିତାଙ୍କ ଅନ୍ତେ ରାଜସିଂହାସନ ଅଳଂକୃତ କରିଥିଲେ । ଏହାଙ୍କ ରାଜତ୍ୱରେ ସେପରି କିଛି ବିଶେଷ ଘଟଣା ଘଟି ନଥିଲା । ତାଙ୍କପରେ ଗମେଇଁ ଧଳ ବାଙ୍କୀର ରାଜା ହେଲେ । ଏ ରାଜା ଧଳବଂଶର ଶେଷ ରାଜା । ଏହାଙ୍କଠାରୁ ଧଳବଂଶ ଲୋପ ଓ ଶ୍ରୀଚନ୍ଦନ ବଂଶର ସୂତ୍ରପାତ ହେଲା । ପରବର୍ତ୍ତୀ ଅଧ୍ୟାୟରେ ସେ ବଂଶର ବିଶେଷ ଘଟଣାମାନ ବର୍ଣ୍ଣିତ ହେବ ।

---

## ତୃତୀୟ ଅଧ୍ୟାୟ

### —ଶ୍ରୀଚନ୍ଦନ ବଂଶୀୟ ରାଜାମାନଙ୍କ ବିବରଣ—

ଗମେଇଁ ଧଳଙ୍କ ଅନ୍ତେ ପୁଣ୍ୟଶ୍ଳୋକ ପାର୍ଥ ଧଳ ରାଜ-ସିଂହାସନ ଅଳଙ୍କୃତ କରିଥିଲେ । ବାଙ୍କୀରେ ଏପରି ମହାପୁରୁଷ କେବେ ରାଜା ହୋଇ ନ ଥିଲେ । ଦେବବ୍ରାହ୍ମଣ-ଭକ୍ତ, ଯୁଦ୍ଧ-ବିଶାରଦ, କ୍ରୀଡ଼ାପ୍ରିୟ ପଣ୍ଡିତ ନରପତିମାନଙ୍କ ମଧ୍ୟରେ ପାର୍ଥ ଥିଲେ ପ୍ରଥମ । ତାଙ୍କପରି ସରଳ ପ୍ରଜାପାଳକ ରାଜା ସେ କାଳରେ ବିରଳ ଥିଲେ ବୋଲି କହିଲେ ଚଳେ ।

ପାର୍ଥ ସିଂହାସନ ପାଇବା ମାତ୍ରେ ଶ୍ରୀଚନ୍ଦନପୁର ଶାସନ ବସାଇ ରଣପୁର ଗ୍ରାମକୁ ଷୋଳ ଘରରେ ବ୍ରାହ୍ମଣମାନଙ୍କୁ ନିଷ୍କରରୂପେ ଦାନ କରିଥିଲେ । ତାଙ୍କର ଗାରିମ ଓ ପାଣ୍ଡିତ୍ୟରେ ଅନ୍ୟାନ୍ୟ ସାମନ୍ତ ରାଜାମାନେ ଆଶ୍ଚର୍ଯ୍ୟ ହୋଇ ପଡ଼ିଥିଲେ । ଗଜପତିଙ୍କୁ ସେ ଅନେକ

ଯୁଦ୍ଧ ଓ ରାଜକାର୍ଯ୍ୟରେ ସାହାଯ୍ୟ ତଥା ପରାମର୍ଶ ଦେଇଥିବାରୁ ଗଜପତି ତାଙ୍କୁ ଧଳ ପଣବଂଶୀ "ଶ୍ରୀଚନ୍ଦନ ମହାପାତ୍ର" ଉପାଧି ଓ ୧୪ ଗଡ଼-ଜାତରେ "ବେହେରା ଖଣ୍ଡାଏତ" ପଦ ନିମ୍ନଲିଖିତ ରାଜା-ସନନ୍ଦ ସହିତ ପ୍ରଦାନ କରିଥିଲେ:—

**ଶ୍ରୀ ମହାରାଜ ଗଜପତିଙ୍କ ଶ୍ରୀ ଛାମୁରୁ ଶ୍ରୀ ଶ୍ରୀଚନ୍ଦନ ମହାପାତ୍ରଙ୍କ ପ୍ରତି ସମ୍ମାନସୂଚକ ବ୍ୟବସ୍ଥା ।**

୧—ବଡ଼ ଦେଉଳରେ ବଡ଼ ପରିଛା ପଣ
୨—ଧବଳ ଓ କଳା ଛତ୍ର
୩—ହାତୀ ଉପରେ ଅମାରୀ
୪—କାହାଳୀ
୫—ସାତହାତ ନଉବତ
୬—ହାତୀ ଉପରେ ଶଙ୍ଖ ନିଶାଣ
୭—ପାଲିଙ୍କି ଆଗପଛେ ନାରଙ୍ଗୀ (୧)
୮—ଦୁଇଟି ଚାମର ଓ ମୟୂର ଝୁଲ
୯—ଦୁଇଟି ଚନ୍ଦ୍ର, ସୂର୍ଯ୍ୟ ତାସ
୧୦—ଦୁଇଟି ରୂପା ଆଶାବଡ଼ି (୨)
୧୧—ସୁରେଖ ଧଣ୍ଡା (୩)
୧୨—ଶଙ୍ଖ କଂଗାଳ (୪)
୧୩—ପାଲିଙ୍କୀରେ ପଟୁକା
୧୪—ପାଲିଙ୍କୀ ଛତ୍ରି ଉପରେ ମଲମଲ ଚାଦର

---

୧ ନାରଙ୍ଗୀ—କାଠରେ ପ୍ରସ୍ତୁତ ସ୍ୱର୍ଣ୍ଣାଦିକଳିତ ଏକ ପ୍ରକାର ଛତ ।

୨ ଅଶାବଡ଼ି—ବାଡ଼ିରେ ରୂପା ଖୋଳ ହୋଇ ଉପରେ ବାଘନଖ ବହିଥାଏ ।

୩ ସୁରେଖ ଧଣ୍ଡା—କାଠ ବା ବାଉଁଶ ଦଣ୍ଡରେ ରୂପା ଛଅଣୀ ହୋଇ ଉପରେ ଏକ ଫୁଲ ମାଳ ଲମ୍ବି ପଡ଼ିଥାଏ ।

୪ କଂଗାଳ—ରାଜକଣିଅ ବସ୍ତ୍ରଖଣ୍ଡ ଦେହରେ ଛବି ଲେଖାଯାଇଥାଏ ।

୧୫—ପଗଡ଼ି ଉପରେ ନଟକଣ (୧)
୧୬—ବାରୁ ବେକରେ ପଟୁକା
୧୭—ମୁଣ୍ଡ ଉପରେ ବକ୍ ସାମଲ ବାନା
୧୮—ଘୋଡ଼ା ଉପରେ ନାଗରା
୧୯—ହାତୀ ଉପରେ ଧଂସା (୨)
୨୦—ଓଟ ଉପରେ ଦମାଲୁ

**ରାଣୀଙ୍କ ସକାଶେ :—**

୧—ଭିତର ଦଗ ସ୍ତମ୍ଭରେ ପାଟମହାଦେଈ ପଦ
୨—ଚନ୍ଦ୍ର ସୂର୍ଯ୍ୟ ଉହାଡ଼ୀ (୩)
୩—ମକରମୁହାଁ ପାଲିଙ୍କି

**ହାକିମି ସାମନ୍ତ ( ଯୁବରାଜ ) ଙ୍କ ପାଇଁ :—**

୧—ମର୍ଦ୍ଦରାଜ ରାୟଗୁରୁ ପଦ
୨—ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ସ୍ତମ୍ଭ ଦରଶନ
୩—ବଡ଼ ଦେଉଳରେ ମର୍ଯ୍ୟାଦା; ବେଢ଼ା ଭିତରେ ମୁକ୍ତିମଣ୍ଡପ ଯାହାତ
ଯାଏ ଯିବା ।
୪—ଚାଉଁଳି ଓ ଗୋଟିକିଆ ମଶାଲ
୫— ବଡ଼ ଦେଉଳରେ ବଡ଼ ପଣଛାପଣ
୬—ସୁନା ଛଡ଼ି
୭—ଅର୍ଗଳଠାରେ ଚାମର ସେବା
୮—ଦେଉଳ ଶୋଧନ

---

୧ ନଟକଣ—ସ୍ୱର୍ଣ୍ଣରତ୍ନାଦିରେ ନିର୍ମିତ ଏକପ୍ରକାର ଅଳଂକାର ।
୨ ଧଂସା—ଏକ ପ୍ରକାର ଗୋଲାକୃତି ବାଦ୍ୟ ।
୩ ବସ୍ତ୍ରରେ ପ୍ରସ୍ତୁତ ଶବାଗର ଖୋଳ । ତହିଁର ଏକ ପାଖରେ ଚନ୍ଦ୍ରଙ୍କ ଛବି ଓ ଅପର ପାର୍ଶ୍ୱରେ ସୂର୍ଯ୍ୟଙ୍କ ଛବି ରୂପା ଓ ସୁନାରେ ଅଙ୍କିତ ହୋଇଥାଏ । ଏହାକୁ ଚନ୍ଦ୍ର ସୂର୍ଯ୍ୟ ଉହାଡ଼ୀ କହନ୍ତି ।

୯—ଶାଢୀ ପରମ୍ପରା ମାଫିକେ
୧୦—ଛଟଣା ନିଯୋଗ ଗଦ୍ୱଣରେ ବସାକୁ ଫେରିବା

**ଶ୍ରୀପୁରୁଷୋତ୍ତମଙ୍କୁ ଶ୍ରୀଚନ୍ଦନ ମହାପାତ୍ର ବଜସ୍ୱ ବେଳକୁ :—**

୧—ଅଠରନଳାଠାରୁ ଦେବାନ କିମ୍ବା ବର୍କ୍ସି ଦୁଇଜଣ ମଧ୍ୟରୁ ଜଣେ ଯାଇଁ ପାଛୋଟି ନେଇଆସିବେ ।
୨—କଳା ଓ ଧଳାଛତ୍ର ବନ୍ଧ
୩—ଗ୍ୱମର ଓ ଦୁଇଟି ମୟୂର ଝୂଲ
୪—ଝାସ, ଝାଲର ପଙ୍ଖା, ଖଣ୍ଡା
୫— ଭେଟପତ୍ର, ଭଟ୍ଟ ଓ ମଙ୍ଗଲ ଗାୟକମାନେ ଥିବେ ।
୬—ଘୋଡ଼ା ଉପରେ ନାଗରା
୭—ସୁନାକୁମ୍ଭ ପାଲିଙ୍କୀ ଉପରେ ଶୁକ୍ଳ ଗୃଦର ବଇରଖ
୮—ଘୋଡ଼ା ବେକରେ ପଟ୍ଟକା
୯—ମୁଣ୍ଡରେ ବକ୍ସାମଲ ବାନା
୧୦— ଯାଉଁଲି ଓ ଗୋଟିକିଆ ମଶାଲ ଦେବାଙ୍କ ଯାଏ ଯିବ ।
୧୧—ଗ୍ରୁମୁ ଶିରୁପା ପରମ୍ପରା ମାଫିକେ
୧୨—ସର୍ପେଚ ବାଜବନ୍ଧ ସହିତ ଗ୍ରୁମୁରୁ ମର୍ଯ୍ୟାଦା ହେବ ।

**ଶ୍ରୀ ଶ୍ରୀ ଠାକୁର ରାଜାଙ୍କ ଗ୍ରୁମୁରୁ ରାଜା ଶ୍ରୀଚନ୍ଦନ ମହାପାତ୍ରଙ୍କ ନିମନ୍ତେ ଶିରୁପା ମର୍ଯ୍ୟାଦା**

ପାଗ, ସର୍ପେଚ, ବାଜୁବନ୍ଧ, ନଟ୍ଟକଣ, ଜମ୍ବା କମରବନ୍ଧା, ପଚ୍ଛୁଡ଼ା ପ୍ରତ୍ୟେକେ ଥାନେ ଲେଖାଏଁ ଏବଂ ଘୋଡ଼ା ଏକଗୋଟା ।

**ସନନ୍ଦ**

ବାଙ୍କୀ ଦଖଲ ପୃଥ୍ୱୀ ଅମାଙ୍ଗୀଠାରୁ କମାଙ୍ଗୀ ଯାଏ ଦଖଲ ଅମଲରେ ଶ୍ରୀଚନ୍ଦନ ମହାପାତ୍ର ଆଣୁଥିବେ ।

## ଯୁବରାଜଙ୍କ ପାଇଁ

ପାଗ, ମଲମଲ, କମରବନ୍ଧା ପ୍ରତ୍ୟେକେ ଥାନେ ଲେଖାଏଁ। ଘୋଡ଼ା ଓ ପଚମ୍ନା ଦୁଇଗୋଟା।

## ଦାଦୀ ଜଗଦେବଙ୍କ ପାଇଁ

ପାଗ, ଥାନ, ପଚମ୍ନା ପ୍ରତ୍ୟେକେ ଥାନେ ଲେଖାଏଁ ଓ ଘୋଡ଼ା ଗୋ ୧ ଟା।

## ବ୍ୟବର୍ତ୍ତଙ୍କ ପାଇଁ

ପାଗ, ଥାନ, ପଚମ୍ନା ଓ ଘୋଡ଼ା ଗୋ ୧ ଟା। ଅମିନଙ୍କ ପାଇଁ ଚଦ୍ଦ୍ରପ। ଅନ୍ତର ସ୍ୱାଇଙ୍କର ଭ୍ରମରବର ପଦ ପଚମ୍ନା ଶାଢ଼ୀ ଗୋ ୧ ଟା। ଏବାଦ୍ ପଚମ୍ନା ଗୋ ୧୦ ଟା ଓ ଝୋଲ୍ ଗୋ ୧୦ ଟା।

—ରାଜା ଶ୍ରୀଚନ୍ଦନ ମହାପାତ୍ରଙ୍କର ଶ୍ରୀ ଶ୍ରୀ ଠାକୁର ରାଜାଙ୍କ ଗ୍ରୁମ୍ଲୁ ସଙ୍ଖୋଲା—

ପାଗା, କନଖାପ୍, ମୁଚିସାମର୍, ଗୁଦଡ୍, ମଲ ମଲ ପ୍ରତ୍ୟେକ ଥାନେ, ଫେଟା ଝୋଲ୍ ଗୋ ୬୦ ଟା ଶିରୋପା ପାଇଁ ନଗଦ ଟ୧୭୫୦୧, ମହାରାଜାଙ୍କ ଗ୍ରୁମ୍ଲୁ ନଜର ବନ୍ଦୀ ଟ ୧୦୧୧—ଏରୂପ ଗାଏ ଟ୧୮୫୧୧।

## ଦେବାନଙ୍କ ପାଇଁ

ପାଗ, ମଲମଲ ଥାନେ ଲେଖାଁଏ। ଫେଟା ଝୋଲ୍ ମୂ୧୦ ଊିଁ। ନଗଦ ଟ ୩୦୧, ରାଜଗୁରୁ ଟ ୩୦୧, ବଲୀୟାର ଫିଦ ଟ ୬୫୧, ରାଉତରା ଟ ୬୫୧—ଗାଏ ଟ ୮୦୧

ଗ୍ରୁମ୍ ପଚ୍ଛନାୟକ, ମୋହରର, ଅଷ୍ଟବଳ, ଦୋର ଦାରୋଗା, ମୁସାଦ ଓଗେରଙ୍କ ପାଇଁ ଟ ୧୬୦୧। ସରେ ଦରବାର ବ୍ୟୟ ଫେଟା ଝୋଲ୍ ମୂ ୮୧ ଊିଁ

ପାଥ ଶ୍ରୀଚନ୍ଦନ କପଣ ପଣ୍ଡିତ ଓ ରଣକୁଶଳ ନରପତି ଥିଲେ, ଏଥିରୁ ଜଣାପଡ଼ୁଅଛି । ଏହାଙ୍କଠାରୁ ଶ୍ରୀଚନ୍ଦନ ବଂଶ ଆରମ୍ଭ । ନିମ୍ନରେ ସେ ବଂଶର ବଂଶଲତା ଓ ରାଜତ୍ୱ କାଳ ଦିଆଗଲା;—

ପାର୍ଥ ଶ୍ରୀଚନ୍ଦନ ୧୬୫୩-୧୬୭୦

ମଧୁସୂଦନ ୧୬୭୦-୯୧

ନିମାଇଁ ୧୬୯୧-୧୭୦୨

ଧନଞ୍ଜୟ ୧୭୦୨-୧୭୧୬

ଦସ୍ତାନିଧି ୧୭୧୬-୩୫

ପଦ୍ମନାଭ ୧୭୩୫-୧୭୫୭

ଫକୀର ୧୭୫୭-୮୬

ବ୍ରଜବିହାରୀ ୧୭୮୬-୧୮୧୩

( ନିଃସନ୍ତାନ ) ପୀତାମ୍ବର ୧୮୧୩-୨୮

(ପୋଷ୍ୟପୁତ୍ର) ଜଗନ୍ନାଥ ୧୮୨୮-୧୮୪୦

ଧନଚନ୍ଦ୍ର

ବିଶ୍ୱନାଥ

**ପାଟ ଶ୍ରୀଚନ୍ଦନ—୧୬୫୩-୧୬୭୦**

ଏହାଙ୍କ ରାଜତ୍ୱ ସମୟରେ ବାଙ୍କୀର ବହୁବିଧ ଉନ୍ନତି ସାଧିତ ହୋଇଥିଲା । ଏ ରାଜା ବଡ଼ ଧାର୍ମିକ ଓ ଲକ୍ଷ୍ମୀବନ୍ତ ପୁରୁଷ ଥିଲେ । ଏହାଙ୍କ ନାମ ପଢ଼ିଲେ ଲୋକେ କହନ୍ତି ଆଜ ଅନ୍ନ ଜଳର ଅଭାବ ନାହିଁ । ଏହାଙ୍କ ଶାସନ କାଳରେ ବାଙ୍କୀରେ ଅନେକ ପୁଷ୍କରିଣୀ ଓ ବନ୍ଧ ନିର୍ମିତ ହୋଇଥିଲା । ଅନେକ ପ୍ରଜା ଓ ବ୍ରାହ୍ମଣ ବହୁତ ଜମିଭୂମି ପାଇଥିଲେ । ଦୁର୍ଭିକ୍ଷ ସମୟରେ ଏ ମହାତ୍ମା ଅଯାଚିତ ଭାବରେ ଧାନ, ଟଙ୍କା, ପଇସା ବାଣ୍ଟି ଦେଉଥିଲେ । ପ୍ରସିଦ୍ଧ ଝଙ୍କାଳିଆ ପାଟଚନ୍ଦ ଏହାଙ୍କ ଉଦ୍‌ଯୋଗରେ ପ୍ରସ୍ତୁତ ହୋଇଥିଲା । ମାଦଳା ପାଟରୁ ଜଳପ୍ରଣାଳୀ ପ୍ରସ୍ତୁତ କରାଇ ସନ୍ନିକଟ ପାଟମାନଙ୍କ ସଙ୍ଗେ ଯୋଗ କରାଇବା ଦ୍ୱାରା ଦାଳୁଅ ଫସଲର ପ୍ରଭୂତ ଉପକାର ସାଧିତ ହେଉଅଛି । ପ୍ରଜାରକ୍ଷା ବିଷୟରେ ସେ "ରାମଚନ୍ଦ୍ର" ଥିଲେ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ପ୍ରସିଦ୍ଧ ରହଣିଆ ପୋଖରୀ ଏହି ରାଜାଙ୍କ କୀର୍ତ୍ତି । ଏହାଙ୍କ ରାଜତ୍ୱ କାଳରେ ବାଙ୍କୀରେ ସର୍ବ ପ୍ରଥମେ ବନ୍ଦୋବସ୍ତ ଚଳିଥିଲା । ନିକଟବର୍ତ୍ତୀ ରାଜାମାନଙ୍କ ସଙ୍ଗେ ଏହାଙ୍କର ସଦ୍‌ଭାବ ଥିଲା ।

ଏହାଙ୍କ ପରେ ମଧୁସୂଦନ ଓ ତାଙ୍କ ପରେ ନିମାଇଁ ଶ୍ରୀଚନ୍ଦନ ବାଙ୍କୀ ରାଜ ସିଂହାସନ ଅଳଂକୃତ କରିଥିଲେ । ଏ ଉଭୟଙ୍କ ରାଜତ୍ୱ କାଳରେ ସେପରି କିଛି ବିଶେଷ ଘଟଣା ଘଟି ନ ଥିଲା ।

ଅନନ୍ତର ରଣକୁଶଳ ଧନଞ୍ଜୟ ୧୭୦୨ ଖ୍ରୀଷ୍ଟାବ୍ଦରେ ରାଜା ହେଲେ । ଖୋର୍ଦ୍ଧାର ଭୋଇବଂଶୀୟ ରାଜାଙ୍କ ସହିତ ବାଙ୍କୀ ଓ ଖୋର୍ଦ୍ଧାର ଦୋପୀମାଳ ସୀମା ବିଷୟରେ ବହୁଦିନବ୍ୟାପୀ କଳହ ଆରମ୍ଭ ହେଲା । ଏଥିରେ ଉଭୟ ପକ୍ଷ ଷଡଯନ୍ତ୍ର ହୋଇ ପରିଶେଷରେ ଯୁଦ୍ଧ କରିବାଲାଗି ସଜ୍ଜିତ ହେଲେ । ପ୍ରଥମ ଥର ଖୋର୍ଦ୍ଧା ରାଜା ବାଙ୍କୀର ସୈନ୍ୟମାନଙ୍କୁ ରଗଡ଼ି ପର୍ଯ୍ୟନ୍ତ ତଡ଼ି ଆଣିଲେ । ରାଜା ଧନଞ୍ଜୟ ସେଠାରେ ସେନା-ନିବାସ ସ୍ଥାପନ କରି ଶତ୍ରୁ ପ୍ରତୀକ୍ଷାରେ ରହିଲେ । କିନ୍ତୁ ଦିନେ ଅର୍ଦ୍ଧ ରାତ୍ରିରେ ଶତ୍ରୁପକ୍ଷ ତାଙ୍କ ଶୋଇଥିବା ବେଳେ ତାଙ୍କୁ ହତ୍ୟା କଲେ । ପୁତ୍ର ଦସ୍ୟୁନିଧି ସେ ସମୟରେ ବାରବର୍ଷର ବାଳକ, ଯୁବତୀ ରାଣୀ; ରାଜ୍ୟ ମଧ୍ୟରେ ଘୋରତର ଆତଙ୍କ ଉପସ୍ଥିତ ହେଲା । କିପରି ଭାବରେ ଯୁଦ୍ଧ ଚଳାଇବାକୁ ହେବ ଏ ବିଷୟରେ ସେନାପତି ବ୍ୟକଣ୍ଠୀ ଓ ଅନ୍ୟାନ୍ୟମାନେ ରାଣୀଙ୍କ ସହିତ ପରାମର୍ଶ କରିବାକୁ ଲାଗିଲେ । ବ୍ୟକଣ୍ଠୀ କହିଲେ, "ମୁଷ୍ଟି-ମେୟ ସୈନ୍ୟ ସାହାଯ୍ୟରେ ଯୁଦ୍ଧ କରିବା ବିଡ଼ମ୍ବନା । ବର୍ତ୍ତମାନ ଯୁଦ୍ଧ ବନ୍ଦ କରି ସନ୍ଧିଲାଗି ପ୍ରସ୍ତାବ ପଠାଯାଉ ।" ରାଣୀଙ୍କ ନୟନରୁ ଅଗ୍ନିକଣା ନିର୍ଗତ ହେଲା । ସେ ହୁଙ୍କାର କରି କହିଲେ, "ତୁମ୍ଭେ ବୃଦ୍ଧ, ତୁମ୍ଭର ମତି ଚପଳ । ସେ ହେତୁ ଏପରି ପ୍ରସ୍ତାବ କରୁଛ । ଶ୍ରୀଚନ୍ଦନ ଅନ୍ନର କଣ ଏଇ ସଦ୍‌ବ୍ୟବହାର? ରାଜା ଯିବା ପଛେ ପଛେ ସ୍ୱାଧୀନତା ହରାଇ ବସିବା କଣ ତୁମ୍ଭର ଅଭିପ୍ରାୟ? ନା, ବରାବର ଯୁଦ୍ଧ ଘୋଷଣା କରିବାକୁ ହେବ ।"

ଶାର ବାଳକ ଦସ୍ୟୁନିଧି ଓ ସେନାପତି ଧନୁର୍ଦ୍ଧର ଏଥିରେ ସମ୍ମତ ହୋଇ ସୈନ୍ୟ ସଜାଇବା ଲାଗି ଆଦେଶ ଦେଲେ । ଯୁଦ୍ଧ ଘୋଷଣା ହେଲା । ବାଙ୍କୀ ରାଜାଙ୍କୁ ଏ ଯୁଦ୍ଧରେ ଢେଙ୍କାନାଳ, ବଡ଼ମ୍ବା, ନରସିଂହପୁର ଓ ସରଣ୍ଡାର ରାଜାମାନେ ସାହାଯ୍ୟ କରିଥିଲେ । ଏହି ଯୁଦ୍ଧରେ ନିଜେ ରାଣୀ ପୁରୁଷ ବେଶରେ ସେନାପତି କାର୍ଯ୍ୟ ଚଳାଇଥିଲେ । ବିପକ୍ଷ ସୈନ୍ୟ-ମାନେ ବିଜୟୀ ହୋଇଥିବାରୁ ଏବଂ ବାଙ୍କୀର ଯୁଦ୍ଧ ସଜ୍ଜା ବିଷୟ ଅବଗତ

ନ ଥିବାରୁ ହଠାତ୍ ଶତ୍ରୁର ଆଗମନ ଦେଖି ସେମାନଙ୍କ ମଧ୍ୟରେ ବିଶୃଙ୍ଖଳା ଉପସ୍ଥିତ ହେଲା । ସୁତରାଂ ଖୋର୍ଦ୍ଧାର ସୈନ୍ୟମାନେ ବାଧ୍ୟ ହୋଇ ପୃଷ୍ଠଭଙ୍ଗ ଦେଲେ । ଏ ଯୁଦ୍ଧରେ ଖୋର୍ଦ୍ଧାର ବିଖ୍ୟାତ ସେନାପତିଙ୍କର ମୃତ୍ୟୁ ଘଟିଥିଲା । ତାଙ୍କର ପାଇକମାନେ ଶତ୍ରୁପକ୍ଷକୁ ଖୋରଧାର କୁଣ୍ଡପଲ୍ଲୀ ଯାଏଁ ପର୍ଯ୍ୟନ୍ତ ତଡ଼ି ନେଇଥିଲେ । ସେଠାରେ ଏ ଯୁଦ୍ଧର ସ୍ମୃତିସ୍ତମ୍ଭ ସଦୃଶ ଗୋଟିଏ ମୁଣ୍ଡ ଦେଉଳ ନିର୍ମିତ ହୋଇଥିଲା । ଆଜିକାଲି ମଧ୍ୟ ଏ ଦେଉଳର ଭଗ୍ନାବଶେଷ ଦୃଷ୍ଟିଗୋଚର ହୁଏ । ଯେଉଁ ବୀର-ରମଣୀ ଏ କାର୍ଯ୍ୟରେ ସେନାପତିତ୍ୱ ଗ୍ରହଣ କରିଥିଲେ, ତାଙ୍କ ନାମ ରାଣୀ ଶୁକ ଦେଈ । ପୃଥିବୀରେ ବୀରପୂଜାର ଗୌରବ ଥିବା ପର୍ଯ୍ୟନ୍ତ ଏହି ରମଣୀଙ୍କ ନାମ ଚିରକାଳ ଅମର ହୋଇ ରହିବ ।

## ଦିବ୍ୟସିଂହ ଦେବ—୧୬୧୬-୧୭୩୫

ଯୁଦ୍ଧାନ୍ତେ ଦିବ୍ୟସିଂହଙ୍କର ଅଭିଷେକ ହୋଇଥିଲା । ସେ ବାଳକ ଥିବାରୁ ବ୍ୟବର୍ତ୍ତା ଓ ବକ୍ସି କିଛୁକାଳ ଶାସନଭାର ଗ୍ରହଣ କରିଥିଲେ । ଯୁଦ୍ଧରେ ଯେ ସମସ୍ତ କ୍ଷତି ହୋଇଥିଲା, ସେ ସବୁ ପୂରଣ କରିବାରେ ଏହାଙ୍କର ଅଧିକାଂଶ ସମୟ କଟି ଯାଇଥିଲା । ରାଜତ୍ୱର ଶେଷ ସମୟକୁ ସେ ଦିବ୍ୟସିଂହେଶ୍ୱର ନାମକ ମହାଦେବଙ୍କ ପ୍ରତିଷ୍ଠା କରି ବସାଇଥିଲେ ।

## ପଦ୍ମନାଭ ଦେବ—୧୭୩୫-୧୭୫୬

ପାଟପୁର ମୌଜାସ୍ଥ ପଦ୍ମନାଭ ପୁର ଶାସନ ଏ ରାଜାଙ୍କ କୀର୍ତ୍ତି । ଏହି ଶାସନ ବ୍ରାହ୍ମଣମାନଙ୍କ ନିମିତ୍ତ ରାଜା ପାଟପୁର ମୌଜା ନିଷ୍କର ରୂପେ ଦାନ କରିଥିଲେ । ଏହାଙ୍କ ସମୟରେ ଭଞ୍ଜିଆ ଯୁଦ୍ଧ ହୋଇଥିଲା । ମାତ୍ର ପଦ୍ମନାଭ ପ୍ରକୃତରେ ବଡ଼ ଶାନ୍ତିପ୍ରିୟ ଓ କ୍ରୀଡ଼ା-ପରାୟଣ ରାଜା ଥିଲେ ।

ସେ ପଶାଖେଳରେ ତୃପ୍ତ ହୋଇ ଜଣେ ବ୍ରାହ୍ମଣଙ୍କୁ ଦଣ୍ଡମାଣ ଜମି ଦାନ କରିଥିଲେ ବୋଲି ଲୋକେ କହନ୍ତି ।

**ଫକୀର ଶ୍ରୀଚନ୍ଦନ—୧୭୫୭-୧୭୮୭**

ଫକୀର ପରମ ବୈଷ୍ଣବ ଥିଲେ । ନରଗାଙ୍ଗ ଗଡ଼ରେ ଗୋଟିଏ ମନ୍ଦିର ନିର୍ମାଣକରି ଶ୍ରୀଚୈତନ୍ୟ ଜୀଉଙ୍କୁ ପ୍ରତିଷ୍ଠା କରାଇଥିଲେ । ଭଗଡ଼ୀରେ ମହିମାମଣିଙ୍କ ମନ୍ଦିରର ମୂଳ ପତ୍ତନ ଏହାଙ୍କ ରାଜତ୍ୱରେ ହୋଇଥିଲା ।

**ବ୍ରଜବିହାରୀ ଶ୍ରୀଚନ୍ଦନ:—୧୭୮୭-୧୮୧୩**

ପିତାଙ୍କ ଅନ୍ତେ ବ୍ରଜବିହାରୀ ରାଜା ହେଲେ । ଏହାଙ୍କ ସମୟରେ ବୋଧହୁଏ ସନନ୍ଦର କାଳ ପୂରିଯିବାରୁ ପୁନଶ୍ଚ ଗଜପତିଙ୍କ ରାଜ ସଭାରୁ ସନନ୍ଦ ମିଳିଥିଲା । ପୂର୍ବୋକ୍ତ ମହିମାମଣିଙ୍କ ମନ୍ଦିର ଏହାଙ୍କ ରାଜତ୍ୱ କାଳରେ ସମ୍ପୂର୍ଣ୍ଣ ରୂପେ ନିର୍ମିତ ହୋଇଥିଲା । ସେ ଚୈତନ୍ୟ ଦେବଙ୍କୁ ନରଗାଙ୍ଗରୁ ଅଣାଇ ବାଙ୍କୀ ଗଡ଼ରେ ବିଜେ କରାଇଥିଲେ । ବୈଦ୍ୟେଶ୍ୱର ବ୍ରଜବିହାରୀ-ପୁର ଶାସନ ଏ ରାଜାଙ୍କ କୀର୍ତ୍ତି ମଧ୍ୟରେ ଅନ୍ୟତମ । ବ୍ରଜବିହାରୀଙ୍କ ବିଷୟରେ ଆମ୍ଭେମାନେ ଯେ ସବୁ ବୃତ୍ତାନ୍ତ ପାଇଅଛୁଁ ତନ୍ମଧ୍ୟରୁ କେତୋଟି ବିଷୟ ଉଲ୍ଲେଖ ଯୋଗ୍ୟ । ଯଥା:—ଦେବାର୍ଚ୍ଚନ, ଦେବଦର୍ଶନ ଓ ଉଦ୍ୟାନ କର୍ମ ପ୍ରଭୃତି ।

**ଦେବାର୍ଚ୍ଚନା:—**

ଜନଶ୍ରୁତି ଅଛି ଯେ ରାଜା ବ୍ରଜବିହାରୀ ଶ୍ରୀଚନ୍ଦନ ଅତି ପ୍ରତ୍ୟୁଷରୁ ସ୍ନାନ କରି ଦେବାର୍ଚ୍ଚନ କରନ୍ତି । ସେ ସମୟରେ ଆଶୀର୍ବାଦ କରିବା ପାଇଁ ଶାସନମାନଙ୍କରୁ କେତେକ ବ୍ରାହ୍ମଣ ଉପସ୍ଥିତ ହେଉଥିଲେ । ପ୍ରବଳ ଶୀତରେ କେହି କେହି ସ୍ନାନ ନ କରି ଆସୁଅଛନ୍ତି ବୋଲି ଜାଣିପାରି କେତେକ ଲୋକେ ତାହା ରାଜମୁଖରେ ଜଣାଇ ଦେଲେ । ରାଜା ବଡ଼ ପଣ୍ଡିତ ଓ ବିବେକବାନ୍ ସୁତରାଂ କିଛି ନକହି ପରଦିନ ଗୋଟିଏ ଭୋଜିର ଯୋଗାଡ଼ କଲେ । ଦେବାର୍ଚ୍ଚନ ପରେ ଭୋଜନ କରିବା ପାଇଁ ବ୍ରାହ୍ମଣ-ମାନଙ୍କୁ ଅନୁରୋଧ କରାଗଲା । ଆଦେଶମତେ ସମସ୍ତେ ସଜ୍ଜିତ ହେଲେ । ମାତ୍ର ଅଶୁଚି ବ୍ରାହ୍ମଣମାନଙ୍କ ଅବସ୍ଥା ସମସ୍ତ ଜଣାପଡ଼ିଲା । ରାଜା ଜାଣିପାରି ସେମାନଙ୍କୁ ନାନାଦି ଭର୍ତ୍ସନା କଲେ । ସ୍ନାନାନ୍ତେ ଭୋଜି ସମାପ୍ତ ହେଲା ।

ବ୍ରାହ୍ମଣମାନେ ଆନନ୍ଦରେ ଫେରିଲେ । ଗ୍ରାମରେ ସେକଥା ପଡ଼ିଲା । ରାଜଗୁରୁ ସମସ୍ତଙ୍କ ପରିଚୟ ଜାଣି ପାରିଲେ ଯେ, ପାଞ୍ଚଜଣ ମାତ୍ର ଏକାନ୍ତ ଘଣ୍ଟାଇଛନ୍ତି; ସୁତରାଂ ସେମାନଙ୍କୁ ତତ୍‌କ୍ଷଣାତ୍ ସାମାଜିକ ଦଣ୍ଡ ବିଧାନ କରାଗଲା । ସେହି ଦିନଠାରୁ ବ୍ରାହ୍ମଣମାନେ ସାବଧାନ ହୋଇଗଲେ ।

**ଦେବଦର୍ଶନ:—**

ଦେବାର୍ଚ୍ଚନ ପରେ ରାଜା କନକଦୁର୍ଗା ଓ ଚୈତନ୍ୟ ମହାପ୍ରଭୁଙ୍କ ଦର୍ଶନ କରନ୍ତି । ପ୍ରତି ସୋମବାର ଦିନ ମହିମାମଣି ଚର୍ଚ୍ଚିକା ଠାକୁରାଣୀ ଏବଂ ସିଦ୍ଧନାଥଙ୍କ ଦର୍ଶନ କରି ରାଜଗୁରୁଙ୍କ ଘରେ ଯୋଗଣ କରନ୍ତି । ଗଉଡ଼ମାନେ ଦେବତାଙ୍କ ଘରେ ଖାନ୍ତି । ସେଥିଲାଗି ସ୍ୱତ ବଳ ଓ ଡଅଣ ବଳ ଖଞ୍ଜାଅଛି । ରାଜଗୁରୁଙ୍କ ଝିଅ ପିତେଇ ନାନୀ ଓ ରୁକ୍ମଣୀ ନାନୀ ବଡ଼ ସୁନ୍ଦର ପାକ କରି ପାରନ୍ତି । ଦିନେ ନାନୀମାନେ ସରୁଚକୁଳି ଓ ଛୁଞ୍ଚିପତ୍ର କରିଥିଲେ, ତାହା ଏତେ ସୂକ୍ଷ୍ମ ହୋଇଥିଲା ଯେ ରାଜାଙ୍କ ହାତରୁ ଆକାଶକୁ ଉଡ଼ିଗଲା । ରାଜା ଏଥିରେ ଭାରି ତୃପ୍ତ ହୋଇ ନାନୀ-ମାନଙ୍କୁ ଦଶମାଣ ଜମି ଖଞ୍ଜି ଦେଇଥିଲେ । ରାଜଗୁରୁଙ୍କ ଦ୍ୱାରରେ ବର୍ତ୍ତି-ମାନ ଯେ କଳାମୁଗୁନି ପଥର ପିଣ୍ଡା ଅଛି, ସେଥିରେ ରାଜାଙ୍କର ସାମୟିକ ଦେହପାଣି ବଢ଼ୁଥିଲା ବୋଲି ଲୋକେ କହନ୍ତି । ବ୍ରାହ୍ମଣ ଯୁବକମାନଙ୍କୁ ରାଜା ଏହି ପିଣ୍ଡା ଟେକିବାକୁ ବାରମ୍ବାର ଉତ୍ସାହିତ କରୁଥିଲେ । ଶୀତଳ-ଷଷ୍ଠୀ ଯାତ୍ରାରେ ନିଜେ ବାଣ ତିଆରି କରିବାପାଇଁ ଉତ୍ସାହ ଦେଉଥିଲେ ଏବଂ ହାବଲୀମାନ ଲଗାଇ ବିଶେଷ ଆମୋଦ ଅନୁଭବ କରୁଥିଲେ । ସିଦ୍ଧନାଥଙ୍କ ନିକଟକୁ ବିଜେ କଲାବେଳେ ସବାରି କବାଟ ପକାଇ ଦେଉଥିଲେ; କାରଣ, ପଥ ମଧ୍ୟରେ ଥିବା ଫସଲରେ ରାଜଦୃଷ୍ଟି ପଡ଼ିଲେ ଖରାପ ହେବ ବୋଲି ଲୋକଙ୍କର ଧାରଣା ଥିଲା ।

**ଉଦ୍ୟାନକର୍ମ:—**

ରାଜା ବେହରଣ ଅଗଣାରେ ଗୋଟିଏ କ୍ଷୁଦ୍ର ଉଦ୍ୟାନ କରିଥିଲେ । ସେଥିରେ ଦଶ ପାଞ୍ଚ ବୁଦା ବାଇଗଣ ଲାଗିଥିଲା । ଦିନେ ବାଇଗଣ ଗଛ

ମୂଳରୁ ଘାସ ବାଛୁବା ସମୟରେ ଦ୍ୟବର୍ତ୍ତୀ ଗୋବିନ୍ଦଶରଣ ପଟ୍ଟନାୟକ ରାଜାଙ୍କୁ ଦେଖି ହସି ଦେଇ ଗୃହକୁ ଫେରିଗଲେ ।

ରାଜା ସେହିକ୍ଷଣି ଦ୍ୟବର୍ତ୍ତୀଙ୍କୁ ଡାକି ହସିବାର କାରଣ ପଚାରିଲେ । ଦ୍ୟବର୍ତ୍ତୀ ନାନା ପ୍ରକାର ଛଳନା କଲେ ମଧ୍ୟ ରାଜା କହିଲେ, "ତୁମେ ଏପରି ଭଣ୍ଡାମି କଲେ ମୁଁ କଦାପି ମାନିବି ନାହିଁ । ତୁମେ ମୋ ଘାସ ବଛା ଦେଖି ବଡ଼ବଡ଼ ହସିଛ ।" ଦ୍ୟବର୍ତ୍ତୀ କହିଲେ, "ଆଜ୍ଞା, ଶ୍ରୀମନ୍ତଙ୍କ ଉପଯୋଗୀ କଣ ଏ କାର୍ଯ୍ୟ ? ବର୍ତ୍ତମାନ ଚାହିଁଲେ ଧଡ଼ିଏ ଶଗଡ଼ ବାଇ-ଗଣ ଆସିପାରେ । ମାତ୍ର ଶ୍ରୀମନ୍ତ ତନ୍ତ୍ରପ୍ରତି ଲକ୍ଷ୍ୟ ନ ରଖି ରାଜୋଚିତ ମର୍ଯ୍ୟାଦା ଲଙ୍ଘନ କରି ଇତର ଲୋକଙ୍କ ଭଳି ଘାସ ବାଛୁଛନ୍ତି ? ରାଜା କହିଲେ, "ଠିକ୍ କଥା, ଯଦି ମୋର ଇଚ୍ଛା ହୁଏ ମୁଁ ଗୋଟିଏ ସଦ୍ୟ ସୁସ୍ୱାଦୁ ବାଇଗଣ ଖାଇ ଖାଆନ୍ତି, ତେବେ ହଠାତ୍ କଣ ମୋତେ ତାହା ମିଳି ପାରିବ ? ତୁମେ ସିନା ମୋ ଆଦେଶରେ ପ୍ରଜାମାନଙ୍କ ଠାରୁ ଧଡ଼ିଏ ଶଗଡ଼ ବାଇଗଣ ଆଣି ଦେବ । ମାତ୍ର ଏ ବାଇଗଣ ଆଗରେ ସେ ଗୁଡ଼ାକ ସୁସ୍ୱାଦୁ କିମ୍ବା ମିଷ୍ଟ ହେବ କି ? ସେଥିରେ ହସିବାର ତ କିଛି କାରଣ ନାହିଁ । ପ୍ରତ୍ୟେକ ଏହିପରି କିଛି କିଛି ଫସଲ କରିବା ଉଚିତ ।" ଦ୍ୟବର୍ତ୍ତୀ ଏ କଥା ଶୁଣି ନୀରବ ହେଲେ ।

କିଛିଦିନ ପରେ ବାଇଗଣ ଗଛମାନଙ୍କରେ ବଡ଼ ଭଲ ଭଲ ବାଇଗଣ ଫଳିଲା । ରାଜାଙ୍କ ଯୋଗଣିଆ ବ୍ରାହ୍ମଣ କମଳ ପୂଜାରୀ ଦିନେ ନିଜ ରୋଷାଇର ଚମତ୍କାରିତା ଦେଖାଇବା ପାଇଁ ସେହି ବାଇଗଣ ବାଡ଼ରେ ଗଛରେ ଲାଗିଥିବା ଗୋଟିଏ ବାଇଗଣରେ ତରକାରୀ କରି ଦେଇଛି । ରାଜା ଏ ସମସ୍ତ ଘଟନା ପ୍ରତ୍ୟକ୍ଷ କରି ବଡ଼ ଆଶ୍ଚର୍ଯ୍ୟ ହେଲେ ଏବଂ ଦ୍ୟବର୍ତ୍ତୀ ଓ ଅନ୍ୟାନ୍ୟ ରାଜପରିଷଦମାନେ ଏ ବିଷୟ ଦେଖି କମଳକୁ ଧନ୍ୟ ଧନ୍ୟ କରିବାକୁ ଲାଗିଲେ । ସମସ୍ତେ ଦେଖିଲେ, ଗୋଟିଏ ବଡ଼ ଉମେଇରେ ନିଆଁ ଅଛି ଓ ସେଥିରେ ସାନ ସାନ ଚାରୋଟି ପାତ୍ରରେ ବାଇଗଣଟି ଚାରିଭାଗ ହୋଇ ଚାରି ତରକାରୀ ହୋଇଯାଇଛି । ରାଜା ଯୋଗଣିଆର ଏ କାର୍ଯ୍ୟରେ ପ୍ରୀତ ହୋଇ ତାକୁ ଦଶ ମାଣ ଜମି ଓ

"କମଳ ବେଦବ୍ୟାସ" ଉପାଧି ଦେଇଥିଲେ । ଆହୁରି ମଧ୍ୟ ପ୍ରଚୁର ଅର୍ଥ ଓ ବସ୍ତ୍ର ଅଳଙ୍କାର ପ୍ରଭୃତି କମଳଙ୍କୁ ମିଳିଲା ।

**ପୀତାମ୍ବର ଶ୍ରୀଚନ୍ଦନ:— ( ୧୮୧୩-୧୮୨୮ )**

ରାଜା ପୀତାମ୍ବର ମହାପ୍ରତାପଶାଳୀ ଓ ବିଶେଷ ଦେବ, ବ୍ରାହ୍ମଣ-ଭକ୍ତ ଥିଲେ; କାହାରି କିଛି ଅନ୍ୟାୟ ଦେଖିଲେ ତାଙ୍କୁ ଗୁରୁତର ରୂପେ ପ୍ରହାର କରୁଥିଲେ; ଏବଂ ସଙ୍ଗେ ସଙ୍ଗେ ସେହି ପ୍ରହାରଜନିତ ପୀଡ଼ାର ଉପଶମ ନିମନ୍ତେ, ତେଲ, ହଳଦୀ, ପଇସା, କଉଡ଼ି ପ୍ରଦାନ କରୁଥିଲେ । ଏହାଙ୍କ ରାଜତ୍ୱ କାଳରେ ଚର୍ଚ୍ଚିକାଙ୍କ ଶୂନ୍ୟବାହିନୀ ମଣ୍ଡପ ନିର୍ମିତ ହୋଇଥିଲା । ସେଥିରେ ଏତେ ସୂକ୍ଷ୍ମ କାରୁକାର୍ଯ୍ୟ ହୋଇଅଛି ଯେ ବର୍ତ୍ତମାନ ତାହା ଦେଖିଲେ ଆଶ୍ଚର୍ଯ୍ୟାନ୍ୱିତ ହେବାକୁ ହୁଏ । ଠାକୁରାଣୀଙ୍କ ଚଳ ମଣ୍ଡପ ମଧ୍ୟ ଏହି ରାଜାଙ୍କ କୀର୍ତ୍ତି । ଏହି ରାଜାଙ୍କର ଏକ ପାଣ୍ଡୁ ବଣିଆଁ ବକ୍ସି ଠାକୁରାଣୀଙ୍କ ନିକଟସ୍ଥ କୁସୁମେଶ୍ୱର ମନ୍ଦିର ଓ ଉତ୍ତର ପାଖ ପାହାଚ ପ୍ରସ୍ତୁତ କରାଇଥିଲେ । ପୀତାମ୍ବର ଗୁଣଗ୍ରାହୀ, ମଲ୍ଲକ୍ରୀଡ଼ା-ବିଶାରଦ ଥିଲେ । ଏ ଦୁଇ କାର୍ଯ୍ୟରେ ସେ ବିଶେଷ ପାରଗ ବୋଲି ଆଜି ସୁଦ୍ଧା ଲୋକେ କହନ୍ତି । ଏହାଙ୍କ ରାଜତ୍ୱ କାଳରେ ମହିମାମଣିଙ୍କ ମନ୍ଦିର ପ୍ରତିଷ୍ଠା ହୋଇଥିଲା ।

ଥରେ ରାଜା ପାଟପୁର ଖମାର ଦେଖିବା ଅଭିଳାଷରେ ଆସିଥିଲେ । ଜଣେ ଗରିବ ବ୍ରାହ୍ମଣ ରାଜାଙ୍କୁ ସାକ୍ଷାତ କରିବା ଅଭିପ୍ରାୟରେ ଗୋଟିଏ ଓସାରିଆ ଆମ୍ବ ପତ୍ର ନେଇଗଲେ, ସ୍ତୁତିରେ ତାହା ଉପହାର ଦେଇ ଆଶୀର୍ବାଦ କଲାପରେ ରାଜା ଆସିବାର କାରଣ ପଚାରିଲେ । ପୁଅଟିର ଉପନୟନ ନିମିତ୍ତ ବ୍ରାହ୍ମଣ କିଛି ସାହାଯ୍ୟ ଭିକ୍ଷା କରନ୍ତେ ରାଜା ଆନନ୍ଦରେ ସେସମସ୍ତ ସାମଗ୍ରୀ ଯୋଗାଇ ଦେଲେ ।

ପଦ୍ମନାଭପୁର ଶାସନରେ ରଘୁଗୁରୁବଂଶଜ ଜଣେ ବ୍ରାହ୍ମଣ ଅତିଶୟ ମଲ୍ଲବିଦ୍ୟାନିପୁଣ ଥିବାର ରାଜା ଶୁଣି ପାରିଲେ । ବ୍ରାହ୍ମଣଙ୍କୁ କିପରି ପରୀକ୍ଷା କରିବେ ବୋଲି ତାଙ୍କୁ ଥରେ ଡ଼ାକାଇନେଇ ସିଂହନାଥ ଦେବଙ୍କ ନିକଟରେ

ବରଣ କରାଇ ଦେଲେ । ଦୁଇ ଗୃଶ ଦନପରେ ଧନେ ଦେବ ଦର୍ଶନ ବାହାନାରେ ସେଠାରେ ଯାଇଁ ପହଞ୍ଚିଲେ । ବ୍ରାହ୍ମଣ ଉଧର ମଣ୍ଡପରେ ବସି ଜପ କରୁଥିଲେ, ରାଜା ହଠାତ୍ ତାଙ୍କ ଚକା ଉପରେ ବସିଗଲେ । ବ୍ରାହ୍ମଣ କିଛି ସମୟ ଅପେକ୍ଷା କରି ଏପରି ଭାବରେ ରାଜାଙ୍କୁ ଠୁଙ୍କାଡ଼ ଦେଲେ ଯେ, ରାଜାଯାଇଁ ପାଞ୍ଚହାତ ଅନ୍ତରରେ ପଡ଼ିଲେ । ସେହିକ୍ଷଣି ସେ ବ୍ରାହ୍ମଣଙ୍କ ଉପରେ ତୃପ୍ତହୋଇ ପଚାରିଲେ, "ଆପଣ କଣ ଖାନ୍ତି ?" ବ୍ରାହ୍ମଣ ଉତ୍ତର କଲେ "ତୁମ୍ଭଙ୍କ ରାଜ୍ୟରେ ମୁଁ ଗୋଟିଏ ଦରିଦ୍ର ଗରିବ ବ୍ରାହ୍ମଣ । ହାତ ପାଖକୁ ଲୁଣ ବ୍ୟତୀତ ମୋତେ ଆଉ କିଛି ମିଳେ ନାହିଁ ।" ରାଜା ସେହିକ୍ଷଣି ତାଙ୍କୁ ଘିଅ ଖାଇବାପାଇଁ ୫ ମାଣ ଜମି ଖଞ୍ଜି ଦେଲେ । ବର୍ତ୍ତମାନ ତାଙ୍କ ଉତ୍ତରାଧିକାରୀମାନେ ସେ ଜମି ଭୋଗ କରୁଅଛନ୍ତି ।

**ଜଗନ୍ନାଥ ଶ୍ରୀଚନ୍ଦନ—(୧୮୨୮-୧୮୪୦)**

ପୁଣ୍ୟଶ୍ଳୋକ ପୀତାମ୍ବର ନିଃସନ୍ତାନ ଥିଲେ । ଏହାଙ୍କ ବିୟୋଗ ପରେ ବାଙ୍କୀରେ ରାଜଗାଦୀ ଶୂନ୍ୟ ପଡ଼ିଲା । ପାଟ ଓ ବଡ଼ ରାଣୀଙ୍କ ପରାମର୍ଶମତେ ଡମ୍ପଡ଼ା ତାଳବସ୍ତ ପୁଟସାହି ନିବାସୀ ଧଳବଂଶଜ ଜଗନ୍ନାଥଙ୍କୁ କପା କୋଡ଼ିବାଠାରୁ ଘେନିଆସି ରାଜଗାଦୀରେ ବସାଇଦେଲେ । ଏହାଙ୍କ ସମୟରେ ତିଗିରିଆ ଯୁଦ୍ଧ ଓ ବାଙ୍କୀ ସ୍ୱାଧୀନତା ଲୋପ ଏ ଦୁଇଟି ପ୍ରଧାନ ଘଟଣା ।

**ତିଗିରିଆ ଯୁଦ୍ଧ—**

ତିଗିରିଆ ଓ ବାଙ୍କୀର ବୋଉସୀମାଳ ବାହୁଁଶପୁଟ ଗଡ଼ । ସେଥିଲାଗି ଉଭୟ ରାଜାଙ୍କର ମନୋମାଳିନ୍ୟ ହୋଇଥିଲା । ସେ କଳହ ଏପରି ଭୀଷଣ ଭାବେ ସଂକ୍ରମିତ ହେଲା ଯେ ଉଭୟେ ଏଥିଲାଗି ଯୁଦ୍ଧ ଘୋଷଣା କଲେ । ବାଙ୍କୀ ରାଜାଙ୍କ ପକ୍ଷରୁ ରଘୁନାଥ ପରମଗୁରୁ ନାମକ ଜଣେ ବ୍ରାହ୍ମଣ ଓ ଲୋକନାଥ ପାଇକରାୟ ନାମକ ଜଣେ କ୍ଷତ୍ରିୟ ଯୁଦ୍ଧ ଚଳାଇଥିଲେ । ଏହି ଯୁଦ୍ଧରେ ତିଗିରିଆର ପ୍ରସିଦ୍ଧ ଗ୍ରାମ ନୂଆପାଟଣା ଛାରଖାର ହୋଇଥିଲା ଏବଂ ବାଙ୍କୀ ସୈନ୍ୟମାନେ ଅନେକ ପାଟଲୁଗା ଓ ଅଳଙ୍କାର ବିଜିତ ଦ୍ରବ୍ୟରୂପେ ଘେନି ଆସିଥିଲେ । ୧୮୩୮ ଖ୍ରୀଷ୍ଟା-

ବ୍ଦରେ ଉଭୟ ରାଜାଙ୍କ ମଧ୍ୟରେ ସନ୍ଧି ସ୍ଥାପିତ ହେବାରୁ ଉଭୟେ ନିଜ ନିଜ ରାଜ୍ୟ ଫେରି ପାଇଲେ ।

## ଚତୁର୍ଥ ଅଧ୍ୟାୟ

### ସରଣ୍ଡା ଓ ଉମର୍ଡ଼ାର ରାଜବଂଶାବଳୀ

#### ସରଣ୍ଡା

ରମେଇଁ ଧଳଙ୍କ ମଧ୍ୟମ ପୁତ୍ର ନରସିଂହ ସାମନ୍ତରାୟଙ୍କ ଠାରୁ ଉମର୍ଡ଼ା ରାଜବଂଶ ଆରମ୍ଭ ଏବଂ ନରସିଂହଙ୍କ ମଧ୍ୟମ ପୁତ୍ର ତ୍ରିଲୋଚନ ଗଜେନ୍ଦ୍ରଙ୍କ ଠାରୁ ସରଣ୍ଡା ରାଜବଂଶର ସୂତ୍ରପାତ ହୋଇଥିଲା । ନିମ୍ନରେ ସରଣ୍ଡା ରାଜବଂଶାବଳୀ ପ୍ରଦତ୍ତ ହେଲା:—

- ତ୍ରିଲୋଚନ ଗଜେନ୍ଦ୍ର
  - ଲକ୍ଷ୍ମୀଧର
    - ବେଲେଶ୍ୱର
      - ଭିଖାରୀ
        - ରାଘବ
          - ପିତେଇ
          - ତାରେଶ୍ୱର
      - କୃଷ୍ଣବନ
        - ନରହରି
          - ଦାସ
          - ଜଣାନାହିଁ ।
        - କାର୍ତ୍ତିକ
      - ବୃନ୍ଦାବନ
        - ହରି
          - ସାଧୁ
    - ଦାମୋଦର
  - ଗଦାଧର
  - ପୁରୁଷୋତ୍ତମ
  - ଫକୀର
  - ଜଣାନାହିଁ

ଦାସ ଧଳଙ୍କୁ ପୀତାମ୍ବର ଶ୍ରୀଚନ୍ଦନ ପୋଷ୍ୟପୁତ୍ର କରିଥିଲେ । ମାତ୍ର ସେ ରାଜା ହୋଇ ନାହାନ୍ତି ।

ସରଣ୍ଡା ରାଜାମାନଙ୍କ ବିଷୟରେ ଆମ୍ଭେମାନେ କିଛି ବିଶେଷ ବିବରଣ ପାଇନାହୁଁ । ଲୋକେ କହନ୍ତି ଏ ରାଜ୍ୟର ରାଜାମାନେ ବଡ଼ ପ୍ରତାପଶାଳୀ ଓ ଯୁଦ୍ଧ-ବିଶାରଦ ଥିଲେ । ଏ ରାଜ୍ୟରେ କଂସାର କବାଟ ଥିଲା । ପ୍ରବାଦ ବାଙ୍କୀର କୌଣସି ରାଜା ଈର୍ଷାପରାୟଣ ହୋଇ ଏ ରାଜବଂଶ ଲୋପକରିବା ଇଚ୍ଛାରେ ରାଜାଙ୍କୁ ଅଂଶୁପାରେ ବୁଡାଇ ମାରି ଦେଇଥିଲେ । ଘଟଣାଟି କେତେଦୂର ସତ୍ୟ କୁହାଯାଇ ନ ପାରେ ।

ବାଙ୍କୀ,ଡମ୍ପଡା ଓ ସରଣ୍ଡା ପରସ୍ପରର ରକ୍ତ ସଂପର୍କ ଥିବାରୁ ଏଠାରେ ରାଜବଂଶାବଳୀମାନ ପ୍ରଦତ୍ତ ହେଉଅଛି ।

ଡମ୍ପଡା

ନରସିଂହ ସାମନ୍ତରାୟ
|
ନନ୍ଦଘଣ୍ଟିମ କବାଟ
|
ଶ୍ରୀଧର ନରେନ୍ଦ୍ର
|
କୃଷ୍ଣଚନ୍ଦ୍ର ନରେନ୍ଦ୍ର
|
କୃପାସିନ୍ଧୁ ନରେନ୍ଦ୍ର
|
ଯଶୋବନ୍ତ ଭ୍ରମରବରରାୟ
|
ଜଗନ୍ନାଥ ଭ୍ରମରବରରାୟ

ଜଗନ୍ନାଥ ଭ୍ରମରବର ରାୟ

ଚନ୍ଦ୍ରଶେଖର ଭ୍ରମରବର ରାୟ

ରାଇ ଜଲେଶ୍ୱର ଭ୍ରମରବର ରାୟ

ପୁରୁଷୋତ୍ତମ ମାନସିଂହ ଭ୍ରମରବର ରାୟ

ରାଇ କଶୋର୍ଣ୍ଣ ମାନସିଂହ ଭ୍ରମରବର ରାୟ

ରଘୁନାଥ ମାନସିଂହ ଭ୍ରମରବର ରାୟ

ବ୍ରଜେନ୍ଦ୍ରକୁମାର ମାନସିଂହ ଭ୍ରମରବର ରାୟ

ବବୁଧେନ୍ଦ୍ର ମାନସିଂହ ଭ୍ରମରବର ରାୟ

ଅମରେନ୍ଦ୍ର ମାନସିଂହ ଭ୍ରମରବର ରାୟ

ବବୁଧେନ୍ଦ୍ର ନାବାଳକ ଅବସ୍ଥାରେ ମୃତ୍ତ ମଣ ଯାଇଥିଲେ । ରାଜମାତା ଢେଙ୍କାନାଳ ରାଜବଂଶୀୟ ଜଣେ ରାଜକୁମାରଙ୍କୁ ପୋଷ୍ୟପୁତ୍ର ରୂପେ ଗ୍ରହଣ କରିଅଛନ୍ତି । ତାଙ୍କ ନାମ ଅମରେନ୍ଦ୍ର ମାନସିଂହ ଭ୍ରମରବର ରାୟ । ଏ କାର୍ଯ୍ୟରେ ଡମପଡ଼ାର ରାଜବଂଶୀୟ କେତେକ ଲୋକ ଅସନ୍ତୁଷ୍ଟ

ହୋଇ ଗୋଟିଏ ମକଦ୍ଦମାର ଯୋଗାଡ଼ କରୁଥିଲେ; କିନ୍ତୁ ପରିଶେଷରେ ସେମାନଙ୍କର ସମସ୍ତ ଚକ୍ରାନ୍ତ ନିଷ୍ଫଳ ହେଲା ଓ ରାଜମାତା ପ୍ରିଭି-କାଉନ୍‌ସିଲ୍‌ରେ ଡିକ୍ରୀ ପାଇଲେ ।

## ପଞ୍ଚମ ଅଧ୍ୟାୟ

### ବାଙ୍କୀ ସ୍ୱାଧୀନତା ଲୋପ ଓ ଇଂରେଜ ସରକାର

ଜଗନ୍ନାଥ ଶ୍ରୀଚନ୍ଦନ ରାଜସିଂହାସନ ଆରୋହଣ କଲା ଦିନୁ ବାଙ୍କୀର ଦୁର୍ଭାଗ୍ୟ ଘୋଟି ଆସିଲା । ରାଜ୍ୟର ଆଭ୍ୟନ୍ତରୀଣ ଉନ୍ନତି ନିମିତ୍ତ ଏହାଙ୍କର ଆଦୌ ଯତ୍ନ ନ ଥିଲା । ବରଂ ଯେତେ ପ୍ରକାର ଅନ୍ୟାୟ ଉପଦ୍ରବ, ସମସ୍ତର ସୂତ୍ରପାତ ହେଲା । କାହା ଘରେ ବହୁତ ଧନ ଦଉଲତ ଅଛି, କିଏ ରାଜାଙ୍କୁ ପଛରେ ନିନ୍ଦା କରୁଛି, ଏସବୁ ବିଷୟ ଚୁଗୁଲିଆମାନଙ୍କଠାରୁ ଶୁଣିପାରି ରାଜା ଅଗ୍ନିଶର୍ମା ହୋଇ ପଡୁଥିଲେ । ପୁଣି ବକ୍ସି ଓ ଅନ୍ୟାନ୍ୟ କେତେକ ପାତ୍ର ପଲାଶୁଣି ବୈଦ୍ୟଙ୍କ ପରାମର୍ଶ-ମତେ ଏକ ପ୍ରକାର ମୋଦକ ରାଜାଙ୍କୁ ଖାଇବାକୁ ଦେଇ ମୂକ କରି-ଦେଲେ । ମନ୍ଦ ଲୋକଙ୍କ ସଂସର୍ଗରେ ପଡ଼ି ରାଜାଙ୍କର ଆଉ ମତିଗତି କିଛି ଠିକ୍ ରହିଲା ନାହିଁ । ବାସ୍ତବରେ ରାଜା ନିଶା ଖାଇ ବିବେକ-ହୀନ ହୋଇ ପଡ଼ିଲେ । ପୁଣି ନବଗୁଞ୍ଜରବତୀ ଥିବାରୁ ତାଙ୍କର ରସିକତା ମଧ୍ୟ ବଢ଼ି ଯାଇଥିଲା । ଏଥିଲାଗି ମଧ୍ୟ ରାଜକୋଷରୁ ପ୍ରଚୁର ଅର୍ଥ ବ୍ୟୟିତ ହେଉଥିଲା । ଏଥିରେ ରାଜ୍ୟର ପ୍ରଧାନ ପ୍ରଧାନ ରାଜପୁରୁଷମାନେ ଆନ୍ତରିକ ବିରକ୍ତ ହୋଇଥିଲେ । ମାତ୍ର ଏଥିପ୍ରତି ରାଜାଙ୍କର ଆଦୌ ଦୃଷ୍ଟି ନ ଥିଲା । କ୍ରମେ ଚୁଗୁଲିଆମାନେ ପ୍ରଶ୍ରୟ ପାଇ ଜଗନ୍ନାଥଙ୍କୁ ନିଜର ହସ୍ତପୁତ୍ତଳିକା ପରି କରିନେଲେ । ସେମାନଙ୍କ କଥାକୁ ରାଜା ଶିବ-ନିର୍ମାଲ୍ୟ ପରି ମୁଣ୍ଡରେ ମୁଣ୍ଡାଇବାକୁ ବାଧ୍ୟ ହେଉଥିଲେ ।

ପୂର୍ବେ ଯେଉଁ ରଘୁନାଥ ପରମଗୁରୁଙ୍କ ବିଷୟ ଉଲ୍ଲେଖ କରି ଯାଇ-ଅଛୁ, ଚୁଗୁଲିଆମାନେ ତାଙ୍କ ବିଷୟରେ ନାନା କୁକଥା ରାଜାଙ୍କୁ କହିଲେ। ପରମଗୁରୁ ମହାବୀର ଥିଲେ । ଏକରକମ ତାଙ୍କ ବାହୁବଳରେ ନିର୍ଭର କରି ରାଜା ରାଜ୍ୟ ଶାସନ କରୁଥିଲେ। ତାଙ୍କ ଉପରେ ଶାସନ ଚଳାଇ ତାଙ୍କୁ ଯବତ୍ର କରିବାପାଇଁ ଜଗନ୍ନାଥଙ୍କର ଶକ୍ତି ନ ଥିଲା । ଏହି ସୁବିଧା ପାଇ ମନ୍ଦ ଲୋକେ ରାଜାଙ୍କୁ ନାନା କୁଶିକ୍ଷା ଦେଲେ । କହିଲେ "ଗ୍ରୀମୂବାର୍କୀର ଛତ୍ରପତି, ଗୁରୁ ବ୍ରାହ୍ମଣ ଟୋକାଟା ଗ୍ରୀମୂଙ୍କ ଅନ୍ତେ ରାଜସିଂହାସନ ଅଧିକାର କରିବ ବୋଲି ନାନାପ୍ରକାର ଷଡ଼ଯନ୍ତ୍ର କରୁଛି । ଏପରି କି ଗ୍ରୀମୂଙ୍କ ବିନାଶ ସାଧନ ନିମିତ୍ତ ନାନା ପ୍ରକାର ବିଷ ଓ ଜଡ଼ିବୁଟି କରୁଥିବାର ଆମ୍ଭେମାନେ ସନ୍ଧାନ ପାଇଛୁଁ।" ଏସବୁ କଥା ଶୁଣି ରାଜା ଆହୁରି କ୍ରୋଧାନ୍ୱିତ ହେଲେ। ତହିଁ ଯେହି ଚୁଗୁଲିଆମାନଙ୍କ ମଧ୍ୟରୁ କେତେ ଜଣ ଗୋଟିଏ ନାଗସାପମୁଣ୍ଡ ନେଇ ରାଜାଙ୍କୁ ଦେଖାଇ କହିଲେ, "ମହାରାଜ, ଦେଖନ୍ତୁ ପରମଗୁରୁ ଗ୍ରୀମୂଙ୍କ ବିନାଶ ନିମିତ୍ତ ନାଗସାପ-ମୁଣ୍ଡମାନ ଗୃହରେ ଖୋସି ରଖିଛି।" ରାଜା ସେହିକ୍ଷଣି ପ୍ରକୃତ ଘଟଣା ବୁଝିବାପାଇଁ ଲୋକ ପଠାଇ ଦେଲେ। ଅନୁଚରମାନେ ପରମଗୁରୁଙ୍କ ଅଜ୍ଞାତରେ ତାଙ୍କ ଘରମାନ ଖୋଜି ପ୍ରାୟ ୫୦ଟି ନାଗମୁଣ୍ଡ ଆଣି ରାଜାଙ୍କୁ ଦେଲେ । ଏଥିରେ ଶ୍ରୀଚନ୍ଦନଙ୍କର କ୍ରୋଧର ସୀମା ରହିଲା ନାହିଁ। ଏହିପରି ମନ୍ଦ ଲୋକେ ରାଜାଙ୍କୁ ନାନାଦି କୁଶିକ୍ଷା ଦେଇ ବାର୍କୀର ପତନ ଆରମ୍ଭ କରିଥିଲେ। ପୁଣି ଏତିକି ବେଳେ ଆଉ ଗୋଟିଏ ଘଟଣା ଘଟି ରାଜାଙ୍କ କ୍ରୋଧ ଦ୍ୱିଗୁଣିତ କରିଦେଲା। ତାହା ଏହି :—

ରାଜାଘର ହଳିଆମାନେ ପ୍ରରୋଚନାରେ ପଡ଼ି ରଙ୍ଗିବରିମାଣ ଓ ବାଲିଆମାଳର କେତେକ ଧାନ ଜବରଦସ୍ତି କାଟିନେଇ ଖମାରଜାତ କଲେ। ଏ ଜମିଗୁଡ଼ିକ ରାଜଗୁରୁଙ୍କର ଦାନଜମି। ରାଜଗୁରୁ ସବୁବେଳେ ଗଡ଼ରେ ଥାନ୍ତି। ଘରର ସ୍ତ୍ରୀଲୋକମାନେ ଏ ସଂବାଦ ପାଇ ବ୍ୟସ୍ତ ହୋଇ ପଡ଼ିଲେ। ସାନ ପୁଅକୁ ଏ ସଂବାଦ ଦେବାଲାଗି ଗଡ଼କୁ ପଠାଇଦେଲେ।

ବାଳକଟି ଗଡ଼କୁ ଯାଇ ପିତାଙ୍କର କୌଣସି ସଂବାଦ ପାଇ ନ ପାରି ସିଂହଦ୍ୱାର ମୂହଁରେ ଠିଆ ହୋଇଥାନ୍ତି, ଏହି ସମୟରେ ପରମଗୁରୁ ସେଠାରେ ପହଞ୍ଚିଲେ । * ସମସ୍ତ ବିଷୟ ବୁଝିନେଇ ସେହିକ୍ଷଣି ଘୋଡ଼ାରେ ବାଳକ ସହିତ ପାଟପୁର ଅଭିମୁଖରେ ଯାତ୍ରା କଲେ । ଖମାର ଖଳାରେ ପ୍ରକୃତ ତଥ୍ୟ ଜାଣିପାରି ହଳିଆମାନଙ୍କୁ ଭୀଷଣଭାବରେ ପ୍ରହାର କଲେ ଏବଂ ସମସ୍ତ ଧାନ ରାଜଗୁରୁଙ୍କ ଖଳାକୁ ନେଇ ଯିବାପାଇଁ ଆଦେଶ ଦେଇ ଗଡ଼କୁ ପ୍ରସ୍ଥାନ କଲେ ।

ପରମଗୁରୁ ଗଡ଼ରେ ପହଞ୍ଚିଲା ବେଳକୁ ଦ୍ୱିପ୍ରହର । ସେ କ୍ରୋଧରେ ଘରକୁ ନ ଯାଇ ସଳଖେ ସଳଖେ ଉଆସ ଆଡ଼କୁ ଗଲେ । ସେତେ-ବେଳକୁ ରାଜା ପହଡ଼ରେ । ପରମଗୁରୁ କାହାରି କଥା ନ ମାନି ପହଡ଼-ଠାରେ ରାଜାଙ୍କୁ ନାନାପ୍ରକାର ତିରସ୍କାର କଲେ । ସେ ରାଜାଙ୍କ ଗୌରବ ରକ୍ଷା କରିବାକୁ ଯାଇ ଯେଉଁ ମଧୁର ଭର୍ତ୍ସନା କଲେ, ତାହା ତାଙ୍କ ଜୀବନ-ବିନାଶ ପକ୍ଷେ ଏକମାତ୍ର ସାହାଯ୍ୟକାରୀ ହୋଇ ପଡ଼ିଲା । ରାଜା ଭୟରେ ତାଙ୍କୁ କିଛି କହିପାରିଲେ ନାହିଁ ସତ୍ୟ; ମାତ୍ର ତାଙ୍କ ମନରେ କ୍ରୋଧାଗ୍ନି ଜଳି ଉଠିଲା । ମନ୍ଦ ଲୋକେ ଯାହା କହୁଥିଲେ, ଏତେ ଦିନେ ତାହା ପ୍ରକୃତ ତଥ୍ୟ ବୋଲି ଜଗନ୍ନାଥ ଜାଣିପାରିଲେ । ସେହି ଦିନଠାରୁ ସେ ପରମଗୁରୁଙ୍କର ଅନିଷ୍ଟସାଧନ ଲାଗି ବଦ୍ଧପରିକର ହେଲେ ।

କିଛି ଦିନ ପରେ ପରମଗୁରୁଙ୍କ ସର୍ବନାଶ ଲାଗି ରାଜା ମତ ବ୍ୟକ୍ତ କଲେ । ଦୁଷ୍ଟ ଲୋକେ ପୁଣି ଅଧିକ ପ୍ରଶ୍ରୟ ପାଇ ରାଜାଙ୍କୁ ଅତିଶୟ ଉତ୍ତେଜିତ କରି-ଦେଲେ । କେଉଁ ଦିନ କେଉଁବେଳେ କପଟ ଭାବରେ ତାଙ୍କର ବଂଶ ଲୋପ

---

* ପରମଗୁରୁ ଓ ରାଜଗୁରୁ ଉଭୟେ ଏକ ଲୋକ ନୁହନ୍ତି । ପରମଗୁରୁ ରାଜ୍ୟର ଦେୱାନ ବା ମନ୍ତ୍ରୀ, ରାଜଗୁରୁ ରାଜାଙ୍କର ପ୍ରଧାନ ପୁରୋହିତ ବା ଆଚାର୍ଯ୍ୟ ଅଟନ୍ତି । ରାଜାଙ୍କର ଉପନୟନ ବିବାହ ଆଦି କାର୍ଯ୍ୟ ଏହାଙ୍କ କର୍ତ୍ତୃତ୍ୱରେ ହୋଇଥାଏ, ପରମଗୁରୁ ରାଜ୍ୟ ଶାସନ ବିଷୟରେ ରାଜାଙ୍କୁ ବରାବର ପରାମର୍ଶ ଦିଅନ୍ତି ।

କରିଥିବ, ସେଥିପାଇଁ ମଧ୍ୟ ସମସ୍ତ ନିରୂପଣ କରିଥିଲେ । ବ୍ରାହ୍ମଣରକ୍ତ ଭୂମିରେ ପଡ଼ିଲେ ଦୋଷାବହ ବୋଲି ମଧ୍ୟ ରାଜା ତାଙ୍କ ବଂଶକୁ ପାଣିରେ ପୁରାଇ ମାରିଦେବା ଲାଗି ପ୍ରସ୍ତାବ କଲେ । ପ୍ରଥମେ ଏ କାର୍ଯ୍ୟ କିଏ କରିବ ବୋଲି କଥା ଉଠିଲାରୁ ପାତ୍ରମାନେ ଅସମ୍ମତ ହେଲେ । ଲୋକେ କହନ୍ତି, ପରିଶେଷରେ ଗୋପାଳପୁର ନିବାସୀ ଜଣେ ପାଇକ ଏ କାର୍ଯ୍ୟ କରିବା ଲାଗି ପ୍ରସ୍ତୁତ ହେଲେ । ରାଜା ସେହିକ୍ଷଣି ଆନନ୍ଦରେ ପରମଗୁରୁଙ୍କ ସମସ୍ତ ସଂପତ୍ତି ତାଙ୍କ ନାମରେ ରକ୍ତପଟା ସନନ୍ଦ କରିଦେଲେ ।

ସେହି ଦିନ ରାତ୍ରରେ ରାଜାଙ୍କ ପ୍ରେରିତ ଗୁପ୍ତଚରମାନେ ପରମଗୁରୁଙ୍କ ଗୃହର ଚତୁର୍ଦ୍ଦିଗରେ ଗୋପନ ଭାବରେ ରହିଗଲେ । ରାତି ପ୍ରଭାତ ହେଲା । ପରମଗୁରୁଙ୍କ ଦାଣ୍ଡଦୁଆର ଫିଟିବା ସଙ୍ଗେ ସଙ୍ଗେ ତାଙ୍କ ସୌଭାଗ୍ୟ-ରବି ଅସ୍ତମିତ ହେଲା । ସେ ଦିନ ପରମଗୁରୁଙ୍କ ପୁଅର ସୁନକ୍ଷତ୍ର । ବ୍ରାହ୍ମଣ ଯୁବକ କେତୋଟି ମାଛ ଧରି ଆନନ୍ଦରେ ଗୃହକୁ ଗଲାବେଳେ ରାଜପରିଚାରମାନେ ତରବାରି ଚଳାଇ ଦେଲେ । ଯୁବକ ଆର୍ତ୍ତରବରେ ପିତାଙ୍କୁ ଡାକ ଛାଡ଼ିଲେ । ପରମଗୁରୁ ଆସିଲା ବେଳକୁ ପୁଅଙ୍କ ମୃତଦେହ ପୃଥିବୀ ଚୁମ୍ବନ କରୁଥିଲା । ସେ ବିକଳରେ ଡାକ ଛାଡ଼ିଲେ ଏବଂ ଚାକରମାନଙ୍କୁ ତାଙ୍କ ହାତକୁ ବାଡ଼ିଗେଣ୍ଡ ବଢ଼ାଇଦେବା ଲାଗି ଅନୁରୋଧ କଲେ; ମାତ୍ର ସମସ୍ତ କାହିଁ ? ରାଜପରିଚାରମାନେ ତାଙ୍କୁ ଏକାକୀ ଆକ୍ରମଣ କରି ପଛଆଡ଼ୁ ବାନ୍ଧି ପକାଇଲେ । ଦେଖୁ ଦେଖୁ ତାଙ୍କରି ଆଗରେ ପୁଅ, ବୋହୂ, ନାତି, ନାତୁଣୀ ଓ ଚାକର ବାକର ସମସ୍ତଙ୍କୁ ହାଣି ଦିଆଗଲା । ପରମଗୁରୁ କେବଳ ଚିତ୍ରାର୍ପିତ ପରି ଅନାଇ ରହିଥାନ୍ତି । ପରିଶେଷରେ ଯେତେବେଳେ ସମସ୍ତଙ୍କ ପ୍ରାଣନାଶ ହେଲା, ରକ୍ଷୀଗଣ ପରମଗୁରୁଙ୍କ ଗଳାରେ ତରବାରି ଲଗାଇଦେଲେ । ଏହି ମହାତ୍ମାଙ୍କ ପତନ ସଙ୍ଗେ ସଙ୍ଗେ ବାଙ୍କୀର ସ୍ୱାଧୀନତା ଚିରକାଳ ପାଇଁ ଲୋପହେଲା । ଏହିଠାରେ ଶ୍ରୀଚନ୍ଦନ ବଂଶ-ଗୌରବ-ଯଜ୍ଞର ପୂର୍ଣ୍ଣାହୁତି ହୋଇଗଲା ।

ରାଜସେବକଗଣ ଏହି ପୈଶାଚିକ କାଣ୍ଡ ସାଧନ କରି ପଳାଇଗଲେ; ମାତ୍ର ପାପ କେତେ ଦିନ ଲୁଚିରହିବ ? ସେଥିପାଇଁ ଗୋଟିଏ

ଉକ୍ତି ଅଛୁ "ପାପ ପାତାଳରୁ ବାହାରେ ।" ପରମଗୁରୁଙ୍କର ଗୋଟିଏ ବିଧବା ଭଗିନୀ ଆତ୍ମଗୋପନ କରି ପଳାଇ ଯାଇ ଖଣ୍ଡପଡ଼ା ସୁପରି-ଣ୍ଟେଣ୍ଡେଣ୍ଟଙ୍କ ନିକଟରେ ଏ କଥା ଜଣାଇଦେଲେ । କ୍ରମେ କଲେକ୍ଟର ସାହେବ ସବୁ ଜାଣିପାରି ବାଙ୍କୀକୁ ଆସିଲେ । ପ୍ରଥମେ କୌଣସି ପ୍ରକାର ପ୍ରମାଣ ମିଳିଲା ନାହିଁ । ମାତ୍ର ଜନଶ୍ରୁତିରୁ ଜଣାଯାଏ ଯେ, ତୁଳସୀପୁରର ସାହୁଗଣିତା ରାମସେବକ ସିଂହ ରାଜାଙ୍କଠାରେ ଥିବା ପୂର୍ବ ଆକ୍ରୋଶ ପରି-ଶୋଧ କରିବା ଲାଗି ଯୋଗାଡ଼ କଲେ । ସେ ବିଧବା ପକ୍ଷ ଅବଲମ୍ବନ କରି ମକଦ୍ଦମା ଚଳାଇଲେ । ଯେଉଁମାନେ ଏ କାର୍ଯ୍ୟରେ ରାଜାଙ୍କୁ ସାହାଯ୍ୟ କରିଥିଲେ, ସେମାନେ ବାଧ୍ୟ ହୋଇ ଆତ୍ମସମର୍ପଣ କଲେ । ପରିଗୃହ-ମାନଙ୍କ ଦୁର୍ଗତିରେ ଜଗନ୍ନାଥ ଅନନ୍ୟୋପାୟ ହୋଇ ରହିଲେ । ପରି-ଶେଷରେ ପୁଣି ସେମାନଙ୍କ ପ୍ରରୋଚନାରେ 'ମୁଁ ସ୍ୱହସ୍ତରେ ଏ କାର୍ଯ୍ୟ କରିଛି' ବୋଲି ସ୍ୱୀକାର କଲେ । ଇଂରେଜ ସରକାର ସେହିକ୍ଷଣି ରାଜା ଓ ଅନୁଚରମାନଙ୍କୁ ଶୃଙ୍ଖଳାବଦ୍ଧ କରି ଚାଲାଣ ଦେଲେ । ଏହିପରି ବାଙ୍କୀର ସୌଭାଗ୍ୟ-ସୂର୍ଯ୍ୟ ଅସ୍ତମିତ ହେଲେ (୧୮୪୦ ଖ୍ରୀଃ ଅଃ)।

ଜଗନ୍ନାଥ ଶ୍ରୀଚନ୍ଦନ ଦଦଗୁଞ୍ଜରବତୀ ଥିଲେ । ତାଙ୍କ ଜେଲ ପରେ ସେହି ରାଣୀମାନଙ୍କୁ ମାସିକ ଟ ୩୦୧ ଲେଖାଏଁ ସରକାରୀ ବୃତ୍ତି ମିଳିଲା । ରାଜାଙ୍କ ପ୍ରଦତ୍ତ ଖମାର ଜମିର ଆୟରୁ ମଧ୍ୟ ଏମାନଙ୍କ ସଂସାରଯାତ୍ରା ନିର୍ବାହିତ ହେଉଥିଲା । ରାଜା ୧୮୪୦-୬୫ ପର୍ଯ୍ୟନ୍ତ ଜେଲରେ ଥିଲେ । ୧୮୬୫ ଖ୍ରୀ: ଅଂ ରେ ଯେତେବେଳେ କଟକକୁ ଲାଟ ସାହେବ ଆସିଲେ, ସେତେବେଳେ ଅଠର ଗଡ଼ଜାତର ରାଜାମାନେ ବାଙ୍କୀ ରାଜାଙ୍କୁ ମୁକ୍ତି ଦେବା ଲାଗି ପ୍ରାର୍ଥନା କଲେ । ସାହେବ ମହୋଦୟ ରାଜାମାନଙ୍କର ଅନୁ-ରୋଧରେ ଜଗନ୍ନାଥଙ୍କୁ ମୁକ୍ତି ଦେଇଥିଲେ । ସେ ଫେରିଆସି ମାହିକ ଟ୧୦୦୧ ସରକାରୀ ବୃତ୍ତି ପାଇ ତୁଳସୀପୁରଠାରେ ବାସ କଲେ । ମାତ୍ର ୮।୧୦ ମାସ ପରେ ତାଙ୍କର ମୃତ୍ୟୁ ଘଟିଲା ।

ଲୋକେ କହନ୍ତି, ମୃତ୍ୟୁ ପୂର୍ବରୁ ସରକାର ପକ୍ଷରୁ ତାଙ୍କ ପରେ କିଏ ସିଂହାସନରେ ବସିବ ବୋଲି ପ୍ରଶ୍ନ ପଚରା ଯାଇଥିଲା । ସେ ତାର

ଉତ୍ତରରେ ଚନ୍ଦ୍ରାମଣିଙ୍କୁ ଉତ୍ତରାଧିକାରୀ ବୋଲି କହୁଥିଲେ । ପ୍ରକୃତରେ ସେତେବେଳେ ଚନ୍ଦ୍ରାମଣି ବୋଲି ତାଙ୍କୀରେ କୌଣସି ବ୍ୟକ୍ତି ନ ଥିଲେ । ରାଜା ଚୈତନ୍ୟ ଜାଡ଼ଙ୍କୁ ଚନ୍ଦ୍ରାମଣି କହୁଥିଲେ । ସେପରି କୌଣସି ଲୋକ ନ ଥିବାରୁ ରାଜ୍ୟ ସରକାରଙ୍କ ନିଜ ଦଖଲରେ ଆସିଲା ।

ରାଜାଙ୍କ ମୃତ୍ୟୁ ଅନ୍ତେ ପାଟରାଣୀ ଉମ୍ମଣ୍ଡା ଧଳ ବଂଶରୁ ଦୀନବନ୍ଧୁ ସିଂହଙ୍କୁ ପୋଷ୍ୟପୁତ୍ର ରୂପେ ଗ୍ରହଣ କରିଥିଲେ । ବର୍ତ୍ତମାନ ତାଙ୍କ ପୁତ୍ର ବିଶ୍ୱନାଥ ଶ୍ରୀଚନ୍ଦନ ମହାପାତ୍ର ତାଙ୍କୀର ପ୍ରକୃତ ରାଜବଂଶଧର ଅଟନ୍ତି ।

୧୮୪୦ ସାଲଠାରୁ ତାଙ୍କୀରେ ଜଣେ ତହସିଲଦାର ରହି ଖଜଣା ଓ ମାଲି ମକଦ୍ଦମାର ଭାର ଗ୍ରହଣ କଲେ । ତନ୍ମଧ୍ୟରୁ କେତେକଙ୍କ ବିଷୟ ନିମ୍ନରେ ବିବୃତ ହେଲା :—

ଗୋପବନ୍ଧୁ ରାୟଗୁରୁ, ପ୍ରଦ୍ୟୁମ୍ନ ସୋମ, ଗିରିଧାରୀ ଲାଲ୍‌ରାୟ, ହର-ମୋହନ ଲାଲ ଏମାନଙ୍କ ମଧ୍ୟରେ ପ୍ରସିଦ୍ଧ ।

ଗୋପବନ୍ଧୁ ଏକ ନରହତ୍ୟାରେ ପଡ଼ି ବ୍ୟତିବ୍ୟସ୍ତ ହୋଇ ତାଙ୍କୀ ପରିତ୍ୟାଗ କରିଥିଲେ ।

ଗିରିଧାରୀ ଅଧିକ ସଙ୍ଗୀତ ଓ ନାଟ ତାମସାପ୍ରିୟ ଥିଲେ । ସେହେତୁ ତାଙ୍କ ବିଷୟରେ ନାନା କଥା ଉଠିବାରୁ ସେ ତାଙ୍କୀ ପରିତ୍ୟାଗ କଲେ ।

ହରମୋହନ ବଡ଼ ଧାର୍ମିକ ପୁରୁଷ ଥିଲେ । ପ୍ରତିଦିନ ବ୍ରାହ୍ମଣ ଭୋଜନ କରାଇବା ତାଙ୍କ ଦୈନିକ କାର୍ଯ୍ୟର ପ୍ରଧାନ ଅଙ୍ଗ ଥିଲା । ତାଙ୍କର ବିଚାର କାର୍ଯ୍ୟରେ ବିଶେଷ ସୁଖ୍ୟାତି ଥିବାର ଶୁଣାଯାଏ ।

ଏହାଙ୍କ ପରେ ବାବୁ ରଘୁନାଥ ଘୋଷ ବ ୧୨ ବର୍ଷ କାଳ ତାଙ୍କୀର ତହସିଲଦାର ହେଲେ । ଏହାଙ୍କ ସମୟରେ ବଟିକା ହାଟ ବସିଥିଲା; ରାସ୍ତାବନ୍ଧ ଓ ମାଲବନ୍ଧ ହୋଇଥିଲା । ରଘୁବାବୁ ସାଧାରଣ ଧରଣର ଲୋକ ଥିଲେ ।

ରଘୁନାଥଙ୍କ ପରେ ବାବୁ ଶ୍ରୀନାଥ ଘୋଷ ତାଙ୍କୀର ତହସିଲଦାର ହେଲେ । ଏ ଜଣେ ପ୍ରଜାପୀଡ଼କ ଓ ଉତ୍କୋଚଗ୍ରାହୀ ଲୋକ ଥିଲେ । ଏଥି-ଲାଗି ତାଙ୍କ ନାମରେ ଉତ୍କୋଚ ଗ୍ରହଣ ମକଦ୍ଦମା ଦାଏର ହେଲା ।

ଗଡ଼ଜାତ ସୁପରିଣ୍ଟେଣ୍ଡେଣ୍ଟ ସ୍ମିଥ ସାହେବ ଏ ମକଦ୍ଦମା ବିଚାର କରି-ଥିଲେ । ଫଳରେ ଶ୍ରୀନାଥଙ୍କୁ ୩ ବର୍ଷ ଜେଲ ଓ ଟ ୫୦୦୧ ଜରିମାନା ହେଲା । ଶ୍ରୀନାଥ ପୁଲିସ୍ ହେପାଜତରେ ଥାଇ ୧୮୮୧ ମସିହା ଜାନୁ-ୟାରି ମାସ ତା ୨୫ ରିଖରେ ଶଙ୍ଖୁଆ ଖାଇ ଆତ୍ମହତ୍ୟା କରିଥିଲେ । ଶ୍ରୀନାଥଙ୍କ ଅମଳରେ କେତେକ ବନ୍ଧ ଓ ପୁଷ୍କରିଣୀ ପ୍ରସ୍ତୁତ ହୋଇଥିଲା । ଆଜି ସୁଦ୍ଧା ଲୋକେ କହନ୍ତି, ଶ୍ରୀନାଥ ଏକଡ଼ନା ହାକିମ ଥିଲେ । ତାଙ୍କ ଭୟରେ ବାଙ୍କୀରୁ ଚୋରି ଉଠି ଯାଇଥିଲା ।

ଏହାଙ୍କ ପରେ ବାବୁ ବଳରାମ ଘୋଷ କିଛି କାଳ ତହସିଲଦାର କାର୍ଯ୍ୟ କରିଥିଲେ ।

ଅନନ୍ତର ବାବୁ ବଳରାମ ଦାସ ବାଙ୍କୀର ଭାରପ୍ରାପ୍ତ ଡେପୋଟି ମାଜି-ଷ୍ଟ୍ରେଟ ହୋଇଥିଲେ । ବଳରାମ ବାବୁ ବଡ଼ କାର୍ଯ୍ୟଦକ୍ଷ ଲୋକ ଥିଲେ; ପ୍ରଜାମାନଙ୍କ ମନ ଅନୁସାରେ କାର୍ଯ୍ୟ କରୁଥିଲେ । ଏହାଙ୍କ ସମୟରେ ବାଙ୍କୀ ଗଡ଼ଜାତରୁ ଖାରଜ ହୋଇ 'କଟକ ଜିଲାର ଥାନା ରୂପେ ସାମିଲ ହୋଇଥିଲା । କ୍ରମେ କ୍ରମେ ଯାବତୀୟ ଆଇନ ବାଙ୍କୀରେ ଜାରି ହୋଇ ତଦନୁସାର କାର୍ଯ୍ୟାନୁଷ୍ଠାନ ହେଲା । ବଳରାମ ବାବୁ ବାଙ୍କୀରେ ୧୪ ବର୍ଷ କାଳ ରହିଥିଲେ । ଏହାଙ୍କ ସମୟରେ ବନ୍ଦୋବସ୍ତ ହୋଇ ଲୋକମାନଙ୍କୁ ପଟ୍ଟା ମିଳିଲା ଓ ରାଜସ୍ୱ କିଛି ପରିମାଣରେ ବଢ଼ାଇ ଦିଆଗଲା । ବଳରାମ ବାବୁଙ୍କ ତତ୍ତ୍ୱାବଧାନରେ ବାଙ୍କୀରେ ଅନେକ କୂପ, ପୁଷ୍କରିଣୀ, ବନ୍ଧ ପ୍ରସ୍ତୁତ ହୋଇ-ଥିଲା । ପରିଶେଷରେ ଏହାଙ୍କ ନାମରେ ମକଦ୍ଦମା ହେବାରୁ ବାବୁ ମହୋ-ଦୟ ଜଳକର ବିଭାଗକୁ ସ୍ଥାନାନ୍ତରିତ ହେଲେ ।

ବାବୁ ମୁରାରି ମିଶ୍ର ଏହାଙ୍କ ପରେ ବାଙ୍କୀର ଶାସନ ଭାର ଗ୍ରହଣ କରି ତିନିବର୍ଷ ଥିଲେ; ମାତ୍ର ଏହାଙ୍କ ପ୍ରଣୀତ ବନ୍ଦୋବସ୍ତ କାର୍ଯ୍ୟରେ ଉପରିସ୍ଥ କର୍ମ-ଚାରୀମାନେ ସନ୍ତୁଷ୍ଟ ନ ହେବାରୁ ବାଧ୍ୟ ହୋଇ ବାବୁ ମହୋଦୟ ବାଙ୍କୀ ପରିତ୍ୟାଗ କଲେ ।

ଏହାଙ୍କ ପରେ ବାବୁ ବାଳମୁକୁନ୍ଦ କାନୁନ୍‌ଗୋ ବାଙ୍କୀର ଡେପୋଟି ମାଜି-ଷ୍ଟ୍ରେଟ୍ ହୋଇଥିଲେ । ଏ ମହାଶୟ ଜଣେ ବୁଦ୍ଧିମାନ୍ ଲୋକ ଥିଲେ । ଏହାଙ୍କ

ସହରରେ ବାଙ୍କୀରେ ସଂସ୍କୃତ ଟୋଲ ସ୍ଥାପିତ ହୋଇଥିଲା । ଟେଲିଗ୍ରାଫ୍, ଜେଲ ଓ ମାଳିବନ୍ଧ ନିର୍ମାଣର ଉଦ୍‌ଯୋଗ ଏହାଙ୍କ ଅମଳର ପ୍ରଧାନ ଘଟଣା । ବନ୍ଦୋବସ୍ତ କାର୍ଯ୍ୟ କରାଯାଇ ରାଜସ୍ୱ ମଧ୍ୟ ବୃଦ୍ଧି ହୋଇଥିଲା । ବୋଧ ହୁଏ ଏହି ବନ୍ଦୋବସ୍ତ ପରେ ସରବରାକାର ନିଯୁକ୍ତି ସମ୍ପର୍କରେ ୬ଗୋବିନ୍ଦ ରଥଙ୍କ ସହିତ ବାବୁ ମହୋଦୟଙ୍କର ବହୁଦିନବ୍ୟାପୀ ଗୋଟିଏ ମକଦ୍ଦମା ହୋଇଥିଲା । ବାବୁ ମହୋଦୟ ବ୍ରାହ୍ମଣ ପଣ୍ଡିତଙ୍କୁ ବଡ଼ ଭଲ ପାଉଥିଲେ ଏବଂ ସାମୟିକ ଶାସନଲୁ ଆସି ମଧ୍ୟ ପୁରାଣ ପାଠ ଶ୍ରବଣ କରି ଯାଉଥିଲେ । ଏହାଙ୍କ ସମୟରେ ଗ୍ଲେଟ ଲାଟ ମହୋଦୟ ବାଙ୍କୀକୁ ଶୁଭ-ଗମନ କରିଥିଲେ ।

ତତ୍‌ପରେ ଶ୍ରୀଯୁକ୍ତ ବ୍ରଜସୁନ୍ଦର-ମର୍ଦ୍ଦରାଜ ବାଙ୍କୀର ଶାସନ ଭାର ଗ୍ରହଣ କରିଥିଲେ । ଏ ମହାଶୟ କେନ୍ଦ୍ରାପଡ଼ା ରାଧାଶ୍ୟାମ ନରେନ୍ଦ୍ରଙ୍କ ନାତି ଅଟନ୍ତି । ବଂଶ ପରଂପରା କ୍ରମେ ଏହାଙ୍କର ସଦାଗ୍ରହ, ଦେବ-ବ୍ରାହ୍ମଣ-ଭକ୍ତି ବହୁଳ ପରିମାଣରେ ଦେଖାଯାଇଥିଲା । ଏ ଜଣେ ପ୍ରଜା-ପାଳକ ହାକିମ ଥିଲେ ।

ଅନନ୍ତର ବାବୁ ରାଧାଚରଣ ଦାସ ମହୋଦୟ ବାଙ୍କୀର ଡେପୋଟି ମାଜିଷ୍ଟ୍ରେଟ୍ ହୋଇଥିଲେ । ଏ ମହୋଦୟ ବିଶେଷ କାର୍ଯ୍ୟଦକ୍ଷ, ନିରଳସ ଓ ପ୍ରଜାପାଳକ ଥିଲେ । ଏହାଙ୍କ ଅମଳରେ ବନ୍ଦୋବସ୍ତ କାର୍ଯ୍ୟ ହୋଇଥିଲା ଏବଂ ପୁରାତନ ଗୋଧେଇ ବନ୍ଧ ଢଉମଟୁପେ ନିର୍ମିତ ହୋଇଥିଲା । ବାବୁ ମହୋଦୟ ବନ୍ଧ କରିବା ଦ୍ୱାରା ବାଙ୍କୀ ପ୍ରଜାଙ୍କର ପ୍ରଭୂତ ମଙ୍ଗଳ ସାଧିତ ହେଉଅଛି ।

ଏହାଙ୍କ ପରେ ବିଚକ୍ଷଣ ପଣ୍ଡିତ ବରେନ୍ଦ୍ରକୃଷ୍ଣ ଦାସ ଅଧିକାରୀ ମହୋଦୟ ବାଙ୍କୀର ଡ଼େପୋଟି ମାଜିଷ୍ଟ୍ରେଟ୍ ହେଲେ । ବାଙ୍କୀ-ଡ଼ମ୍ପଡ଼ା ହାଇସ୍କୁଲ ସ୍ଥାପନରେ ଏହାଙ୍କର ଅକ୍ଲାନ୍ତ ପରିଶ୍ରମ ଓ ପ୍ରଗାଢ଼ ଅଧ୍ୟବସାୟ ଅତୀବ ପ୍ରଶଂସନୀୟ । ଏଥିରେ ବର୍ତ୍ତମାନ ଶତାଧିକ ଛାତ୍ର ଅଧ୍ୟୟନ କରୁ-

ଅଛନ୍ତି । ଏହାଙ୍କ ସମୟରେ ବାଙ୍କୀରେ ପଥକର ଜମାବୃଦ୍ଧି କାର୍ଯ୍ୟ ମଧ୍ୟ ହୋଇଥିଲା ।

ତଦନନ୍ତର ବାବୁ ଦୁର୍ଗାଚରଣ ଦାସ ମହୋଦୟ ବାଙ୍କୀର ଡ଼େପୋଟି ହୋଇଥିଲେ । ସେ ହାଇସ୍କୁଲ ଛାତ୍ରାବାସ ତିଆରି କରାଇଥିଲେ ଓ ଜଣେ ଜବରଦସ୍ତ ମାଜିଷ୍ଟ୍ରେଟ ଥିଲେ । ଏହାଙ୍କ ସମୟରେ ବିହାରଓଡ଼ିଶା ଲାଟ ଷ୍ଟିଫେନ୍‌ସନ ସାହେବ ଅଂଶୁଆ ହ୍ରଦକୁ ଆସି ଶୀକାର କରି ଯାଇଥିଲେ । ତାଙ୍କ ପରେ ଶ୍ରୀଯୁକ୍ତ ଭଗବାନ ମହାପାତ୍ର ଓ ଭଗବାନ ବାବୁଙ୍କ ପରେ ବାବୁ ସୁନ୍ଦଲଚନ୍ଦ୍ର ପାଣ୍ଡିତ ବାଙ୍କୀର ଶାସନ ଭାର ଗ୍ରହଣ କରିଥିଲେ ।

ତାଙ୍କ ପରେ ରାୟ ସାହେବ ଫଣୀନ୍ଦ୍ରନାଥ ଗୁପ୍ତ ବାଙ୍କୀର ଡ଼େପୋଟି ମାଜିଷ୍ଟ୍ରେଟ୍ ହେଲେ । ଚର୍ଚ୍ଚିକା ତୁଳସୀପୁର ରାସ୍ତାରେ କବାକୁଣ୍ଡା, ପଥରଗୁଠ, ହେକା ନକଟଡ଼ାଣ୍ଡି ତିନୋଟି ପୋଲ ନିର୍ମାଣ ଏହାଙ୍କ ଅମଳର ପ୍ରଧାନ ଘଟଣା । ଏଥିଲାଗି ବାଙ୍କୀରେ ଗୋଟିଏ ଗ୍ରେଟ ଦରବାର ହୋଇଥିଲା । କମିଶନର ସାହେବ ଜିଲ୍ଲା ବୋର୍ଡର ଚେୟାରମ୍ୟାନ ବାବୁ ମହୋଦୟଙ୍କୁ ବିଶେଷ ପ୍ରଶଂସା କରିଥିଲେ ଓ ଯେଉଁମାନେ ଏ କାର୍ଯ୍ୟରେ ବିଶେଷ ମନ ଦେଇଥିଲେ, ସେମାନଙ୍କୁ ପୁରସ୍କାର ଦିଆ ଯାଇଥିଲା । ବିଗ୍ରହ କାର୍ଯ୍ୟରେ ଏ ମହୋଦୟ ନିରପେକ୍ଷ ଥିଲେ ।

ଏହାଙ୍କ ପରେ ବାବୁ ପଦ୍ମଚରଣ ଦାସ ବାଙ୍କୀର ଡ଼େପୋଟି ମାଜିଷ୍ଟ୍ରେଟ୍ ହୋଇଥିଲେ । ଏହାଙ୍କ ସମୟରେ ବାଙ୍କୀ ହାଟ ନିଲାମ ହୋଇଥିଲା ।

ବର୍ତ୍ତମାନ ନରେନ୍ଦ୍ରନାଥ ଦତ୍ତ ବାଙ୍କୀର ଭାରପ୍ରାପ୍ତ ଡ଼େପୋଟି ମାଜିଷ୍ଟ୍ରେଟ୍ ଅଛନ୍ତି ।

# ପରିଶିଷ୍ଟ

## ସନେଇଘଇ ପୁଅଙ୍କ କଥା

ବାଙ୍କୀରେ ଧଳବଂଶର ରାଜତ୍ୱ ଆରମ୍ଭ ହେବା ପୂର୍ବରୁ ଏମାନେ ଏ ରାଜ୍ୟର ବାସିନ୍ଦା । ଏମାନେ ପ୍ରବଳ ପରାକ୍ରାନ୍ତ ଓ ବିଶେଷ ଦୁଷ୍ଟ ଥିଲେ । ସେଥିଲାଗି ଆଜି ମଧ୍ୟ ଲୋକେ "ବାଙ୍କୀ ସନେଇ"ଙ୍କୁ ବିଶ୍ୱାସ ନାହିଁ ବୋଲି କହନ୍ତି । ଏ ଜାତି ଦସ୍ୟୁବୃତ୍ତି ଓ ଯୁଦ୍ଧବିଦ୍ୟାରେ ଅତିଶୟ ପାରଦର୍ଶୀ ଥିଲେ । ପରମ୍ପରାକ୍ରମେ ରାଜାଙ୍କଠାରୁ ଜାଗିର ପାଇ ଏମାନେ ରାଜାଙ୍କୁ ସବୁବେଳେ ସାହାଯ୍ୟ କରୁଥିଲେ । କୌଣସି ଲୋକ ରାଜାଙ୍କର ଶତ୍ରୁ ହେଉଥିଲେ, ରାଜା ଏହିମାନଙ୍କ ଦ୍ୱାରା ତାକୁ ଶାସନ କରୁଥିଲେ । ଥରେ କୌଣସି ଏକ ଘଟଣାରେ ବାଙ୍କୀ ରାଜାଙ୍କୁ ଗଜପତି ଖୋରଧା ଗଡ଼ରେ ବନ୍ଦୀ କରିଥିଲେ । ସନେଇଘଇ ପୁଅମାନେ ବାଙ୍କୀରୁ ତଳେ ତଳେ ସୁଡଙ୍ଗ ଖୋଳି ରାଜାଙ୍କ ବନ୍ଦୀଶାଳରେ ବାଟ ଫୁଟାଇଦେଲେ ଏବଂ ଶୀଘ୍ର ଗଡ଼କୁ ବାହାରି ଆସିବା ଲାଗି ରାଜାଙ୍କୁ ଅନୁରୋଧ କଲେ ।

ରାଜା ସେମାନଙ୍କୁ ବୁଝାଇ ସୁଝାଇ ଫେରାଇ ଦେଲେ । ପର ଦିନ ପ୍ରାତଃକାଳରେ ମହାରାଜାଙ୍କୁ ସମସ୍ତ ଘଟଣା ପ୍ରତ୍ୟକ୍ଷ କରାଇଦେଲେ । ମହାରାଜା ଏଥିରେ ଆଶ୍ଚର୍ଯ୍ୟାନ୍ୱିତ ହୋଇ ସେହିକ୍ଷଣି ବାଙ୍କୀରାଜାଙ୍କୁ ମୁକ୍ତି ଦେଲେ । ଏହି ସନେଇମାନଙ୍କ ବିଷୟରେ ଅନେକ ପ୍ରବାଦ ପ୍ରଚଳିତ ଅଛି । ଲୋକେ ଏମାନଙ୍କୁ ଅସଭ୍ୟ ବଣୁଆ ଜାତି କହନ୍ତି ।

## ସାହୁଗଣିତା ରାମସେବକ ସିଂହ

ପୁଣ୍ୟାତ୍ମା ରାମସେବକ ସିଂହ ବାଙ୍କୀର ତୁଳସୀପୁର ଗ୍ରାମର ଅଧିବାସୀ । ଏହାଙ୍କ ସମୟରୁ ବାଙ୍କୀକୁ ରଜପୁତମାନେ ଆସି ରାଜକାର୍ଯ୍ୟ କରୁଥିଲେ । ଏମାନେ ଜାତିରେ କ୍ଷତ୍ରିୟ । ମିବାର ରାଣା ପ୍ରତାପସିଂହଙ୍କ ସ୍ୱଇ-

ଶକ୍ତସିଂହଙ୍କ ଔରସରୁ ବାଦସାହ ଆକବରଙ୍କ କନ୍ୟା ମେହେର ଉନ୍ନିସାଙ୍କ ଗର୍ଭରୁ ଏମାନଙ୍କର ଜନ୍ମ ।

ରାମସେବକ ପ୍ରକୃତରେ ଜଣେ ଦେବବ୍ରାହ୍ମଣ-ଭକ୍ତ ମହାଜନ ଥିଲେ । ଏହାଙ୍କର ପ୍ରତଦନ ବାସ୍ତୁଘ ଦୋଡ଼ ଲେଖନ ଚଳୁଥିବାର ଲୋକେ କହନ୍ତି । ଏ ମହାତ୍ମା ଅନେକ ପୁଷ୍କରଣୀ, ଦେବାଳୟ ନିର୍ମାଣ କରିଥିଲେ । ଆହୁରି ମଧ୍ୟ ପଥିକମାନଙ୍କ ପାଇଁ ଧର୍ମଶାଳା ଓ ସଦାବ୍ରତ ଦେଉଥିବାର ଶୁଣାଯାଏ ।

ଏହାଙ୍କ ମୃତ୍ୟୁ ସମ୍ବନ୍ଧରେ ଗୋଟିଏ ଅଦ୍ଭୁତ ଜନଶ୍ରୁତି ଶୁଣାଯାଏ । ତାହା ନିମ୍ନରେ ଦିଆଗଲା :—

ରାମସେବକ ମୃତ୍ୟୁର ଅବ୍ୟବହିତ ପୂର୍ବରୁ ଜାଣିଲା ପରି ଗଙ୍ଗାସ୍ନାନ ଓ ଗୟାଶ୍ରାଦ୍ଧ କରିବା ନିମିତ୍ତ ମନଃସ୍ଥ କରି ବ୍ରାହ୍ମଣମାନଙ୍କୁ ଡକାଇ ଗୋଟିଏ ବଡ ଭୋଜର ଆୟୋଜନ କଲେ । ଭୋଜନ ପରେ ବ୍ରାହ୍ମଣମାନଙ୍କୁ ଏକତ୍ର କରି ସାଷ୍ଟାଙ୍ଗ ଦଣ୍ଡବତ ହେବା ପରେ କର ଯୋଡ଼ି କହିଲେ, "ଆପଣମାନେ ସତ୍ୟ କରନ୍ତୁ, ମୁଁ ଗୋଟିଏ ପ୍ରାର୍ଥନା କରିବି ।" ବ୍ରାହ୍ମଣମାନେ ସମ୍ମତ ହେଲେ ।

ରାମସେବକ ଅତି ବିନୀତଭାବରେ କହିଲେ, "ଆପଣମାନେ ମୋତେ ଏଇ ଆଶୀର୍ବାଦ କରନ୍ତୁ, ଯେପରି ଅଳ୍ପ ଦିନ ମଧ୍ୟରେ ମୋର ବଂଶ ଲୋପ ହୋଇଯିବ ।" ବ୍ରାହ୍ମଣମାନେ ହାସ୍ୟ ହାସ୍ୟ କରିବାକୁ ଲାଗିଲେ; କିନ୍ତୁ ଅଗତ୍ୟା ସତ୍ୟ କରିଥିବାରୁ 'ତଥାସ୍ତୁ' ଏହି ବାକ୍ୟ ଗମ୍ଭୀର ସ୍ୱରରେ ଉଚ୍ଚାରଣ କଲେ । କିଛି ଦିନ ପରେ ମହାଜନ ତାଙ୍କର ସମସ୍ତ ପରିବାର ନେଇ ଗୟାଶ୍ରାଦ୍ଧ ଉଦ୍ଦେଶ୍ୟରେ ଯାତ୍ରା କଲେ । ପଥ ମଧ୍ୟରେ ପ୍ରଥମେ ଚନ୍ଦ୍ରପ୍ରଭ ଓ ସୂର୍ଯ୍ୟପ୍ରଭ ଘୋଡ଼ା, ତାପରେ ଶୁଆ ସାରି ଦୁଇଟି ଯାକ ପ୍ରାଣତ୍ୟାଗ କଲେ । ଗୟାକ୍ଷେତ୍ରରେ ପହଞ୍ଚିଲା ବେଳକୁ କେବଳ ରାମସେବକଙ୍କ ବ୍ୟତୀତ ସମସ୍ତେ ପଞ୍ଚତ୍ୱ ପ୍ରାପ୍ତ ହୋଇଥିଲେ । ମହାଜନ ସମସ୍ତଙ୍କ ଅସ୍ଥି

ଗଙ୍ଗାରେ ପକାଇ ଗୟାରେ ପିଣ୍ଡ ଦାନ କଲେ । କିଛି କାଳ ଗୟାରେ ବାସ କଲା ପରେ ତାଙ୍କର ସ୍ୱର୍ଗାରୋହଣ ହୋଇଥିଲା ।

## ଦାତା ଗଙ୍ଗାଧର ସାମନ୍ତରାୟ

ଗଙ୍ଗାଧର ବୈଦ୍ୟେଶ୍ୱର-ନିବାସୀ ଜଣେ ଧନୀ ମହାଜନ । ଖୋରଧା-ନିବାସୀ ଦାମୋଦର ସୟଗୁରୁ ନାମକ ଜଣେ ବ୍ରାହ୍ମଣ ଏହାଙ୍କ ଠାରୁ କିଛି ଟଙ୍କା କରଜ ନେଇଥିଲେ । ସେହି ଟଙ୍କା ଓ ତହିଁର ସୁଧରେ ଦାମୋ-ଦରଙ୍କ ପାଞ୍ଚ ବାଟି ଜମି ଓ ଅଠର ବଖରା ପଥର ଘର ନିଲାମ ହୋଇ-ଗଲା । ଦାମୋଦର ନିରୁପାୟ ହୋଇ ଗ୍ରାମରୁ ବାହାରି ଆସି ମହାନଦୀରେ ସ୍ନାନ ସାରି ଗଙ୍ଗାଧରଙ୍କ ପିଣ୍ଡାରେ ବସି ରହିଲେ । ଦାମୋଦର ଦୀର୍ଘକାୟ; ବ୍ରହ୍ମତେଜରେ ତାଙ୍କ ଦେହ ଝଲସି ପଡୁଥିଲା । ଲୋକେ ଏହିକି କଥା ଦେଖି ଭାବିଲେ, ସାମନ୍ତରାୟ ଏ ବ୍ରାହ୍ମଣଙ୍କର ଜମିବାଡ଼ି ନିଲାମରେ ଆଣି-ଥିବାରୁ ବ୍ରାହ୍ମଣ ବର୍ତ୍ତମାନ କ୍ରୋଧରେ ଏଠାରେ ଧାରଣା ଦେଉଛନ୍ତି । ନିଶ୍ଚୟ ଏଥିରେ ମହାଜନଙ୍କର କିଛି ନା କିଛି କ୍ଷତି ଘଟିବ ।

ଏହି ସମୟରେ ସାନ୍ତ ସେଠାରେ ପହଞ୍ଚିଲେ । ବିନୀତ ଭାବରେ କହିଲେ, "ପ୍ରଭୁ, କାହିଁକି ଏଠାରେ ବସି ରହିଛନ୍ତି ? ଠାକୁର ଘରକୁ ବିଜେ କରନ୍ତୁ । ସେଠାରେ ଭୋଜନାଦିର ବନ୍ଦୋବସ୍ତ କରି ଦେବି ।" ଦାମୋଦର କହିଲେ, "ମୁଁ ଏକାକୀ ଆହାର କଲେ କଣ ହେବ, ତୁମେ ତ ମୋର ସର୍ବସ୍ୱ ନିଲାମ କରି ଆଣିଛ । ମୋ ପିଲାଏ ବର୍ତ୍ତମାନ ଖାଲି ଉପ-ବାସ ଥିବେ । ତୁମେ ମହାଜନ, ଦୟା କରି ଯଦି ମୋ ପରିବାର ରକ୍ଷା କରି-ପାର, ତେବେ ବିଶେଷ ଧର୍ମ ହେବ ।"

ସାନ୍ତ ଏହା ଶୁଣି ଅବାକ୍ ହୋଇଗଲେ । ତାଙ୍କ ତୁଣ୍ଡରୁ କଥା ବାହାରିଲା ନାହିଁ । ପରେ କ୍ଷଣ କାଳ ବିଚାର କରି ହାତରେ ଜଳ ତୁଳସୀ ଧରି କହିଲେ,"ପ୍ରଭୁ, ମୁଁ ଆପଣଙ୍କ ପିଲାମାନଙ୍କ ପାଇଁ ଅଠର ବଖରା ପଥର ଘର ଓ ପାଞ୍ଚବାଟି ଜମି ପୁନର୍ଦାନ କଲି,ଆପଣ ଦୟା କରି ଏ ଭୃତ୍ୟର ଯତ୍କିଞ୍ଚିତ୍ ସାମାନ୍ୟ ଦାନ ଗ୍ରହଣ କରନ୍ତୁ ।"

ଦାମୋଦର ପ୍ରସନ୍ନ ହୋଇ ସାମନ୍ତରାୟଙ୍କୁ ଆଶୀର୍ବାଦ ଜଣାଇ ଆହ୍ୱାରବ୍ଧ ସମାପନ ପରେ ଗ୍ରାମକୁ ଫେରିଗଲେ । ଧନ୍ୟ ଗଙ୍ଗାଧର ! ଧନ୍ୟ ତୁମ୍ଭର ନିଃସ୍ୱାର୍ଥତା !

## ଭକ୍ତ ବିଶ୍ୱନାଥ ଦେବତା

ପାଟପୁର ମୌଜାର ପଦ୍ମନାଭପୁର ଶାସନ ବିଶ୍ୱନାଥଙ୍କ ଜନ୍ମଭୂମି । ସେ ପ୍ରତିଦିନ ସିଂହନାଥ ଦେବଙ୍କ ଦର୍ଶନ ନ କଲେ ଅନ୍ନ ଜଳ ଗ୍ରହଣ କରୁ ନ ଥିଲେ । ତେବେ ରାଜପରିସ୍ତରମାନେ ତାଙ୍କ ଉପରେ ଦୋଷାରୋପ-ପୂର୍ବକ ତାଙ୍କୁ ଶୃଙ୍ଖଳାବଦ୍ଧ କରି ରାଜାଙ୍କ ସମ୍ମୁଖକୁ ନେଇଗଲେ । ବିଶ୍ୱନାଥ ଉପବାସରେ ଗଡରେ ପଡ଼ିଥିଲେ । ରାଜା ପଚାରିଲେ, "ତୁ କାହିଁକି ଉପବାସ ରହିଛୁ ?" ବିଶ୍ୱନାଥ ଉତ୍ତର କଲେ, "ମୁଁ ପିତାମାତାଙ୍କୁ ନ ଦେଖିଲେ ଆହାର କରି ପାରିବି ନାହିଁ ।" ରାଜା ପୁଣି ପ୍ରଶ୍ନ କଲେ, "ତୋର ପିତାମାତା କିଏ ?" ବିଶ୍ୱନାଥ କହିଲେ, "ସିଂହନାଥ ମୋର ପିତା ଓ ପାର୍ବତୀ ଠାକୁରାଣୀ ମୋର ମାତା, ଉଭୟେ ମନ୍ଦିର ମଧ୍ୟରେ ଥାଆନ୍ତି ।" ରାଜା ଏ କଥା ଶୁଣି ସେହିକ୍ଷଣି ତାଙ୍କୁ ସେଠାକୁ ନେଇଯିବା ଲାଗି ଭୃତ୍ୟ-ମାନଙ୍କୁ ଆଦେଶ ଦେଲେ । ବିଶ୍ୱନାଥ ପାଟ ଅଗଣାରେ ପହଞ୍ଚିବା ମାତ୍ରେ ଉଚ୍ଚସ୍ୱରରେ ବାପମାଆଙ୍କୁ ଡାକିଲେ । ପରେ ଗମ୍ଭୀର ସ୍ୱରରେ କହିଲେ, "ତିନି ରଥେ ଉଡ଼େ ତିନି ବାନା । ବିଶିକି କେ କଲା ଏତେ ଅନା ।"

ତତ୍ପରେ ତିନି ଥର ଦଣ୍ଡ ପ୍ରଣାମ କଲା ପରେ ଗୋଡ଼କୁ ଏପରି ସ୍ୱରରେ ଯୁଝିଦେଲେ ଯେ, ଦେଖୁ ଦେଖୁ ସେହି ଲୌହ ଶୃଙ୍ଖଳ ଛିଡ଼ି-ଗଲା । କ୍ରମେ ରାଜାଙ୍କ ନିକଟକୁ ଏ ସଂବାଦ ଗଲା । ରାଜା ତାଙ୍କୁ ଦେବ-ଭକ୍ତ ଜାଣି କୌଣସି ପ୍ରକାର ଦଣ୍ଡ ବିଧାନ ନ କରି ମୁକ୍ତ କରିଦେଲେ ।

ଧନ୍ୟ ବିଶ୍ୱନାଥ ! ଧନ୍ୟ ତୁମ୍ଭର ଦେବାରାଧନା !

## ଲୋକନାଥ ପାଇକରାୟ

ଲୋକନାଥଙ୍କର ପ୍ରକୃତ ସଂଜ୍ଞା ପ୍ରଥମେ ଧନ ଥିଲା । ତାଙ୍କ ପୂର୍ବ ବଂଶ କେବେ କପରି ବାଙ୍କୀକୁ ଆଗମନ କରିଥିଲେ, ସେ ବିଷୟରେ କୌଣସି ତଥ୍ୟ ନାହିଁ । ଆଜକାଲି ତାଙ୍କ ବଂଶ ପାଟପୁରରେ ଅଛନ୍ତି । ଏମାନେ ଯୁଦ୍ଧବିଦ୍ୟାରେ ବିଶେଷ ପାରଦର୍ଶୀ ଥିଲେ । ସେ ପ୍ରଥମେ ପଦାତିକ ସୈନ୍ୟରୂପେ ଶ୍ରୀଚନ୍ଦନଙ୍କୁ ସାହାଯ୍ୟ କରୁଥିଲେ; ମାତ୍ର ଅଳ୍ପ କାଳ ମଧ୍ୟରେ ତାଙ୍କର କ୍ଷମତା, ସାହସ, ଶୌର୍ଯ୍ୟ ଏପରି ବଢିଗଲା ଯେ, ଶ୍ରୀଚନ୍ଦନ ତାଙ୍କ ଉପରେ ସନ୍ତୁଷ୍ଟ ହୋଇ ତାଙ୍କୁ ପାଇକରାୟ ଉପାଧି ପ୍ରଦାନ କରିଥିଲେ ।

ଲୋକେ କହନ୍ତି, ଲୋକନାଥ ଜଗନ୍ନାଥ ଶ୍ରୀଚନ୍ଦନଙ୍କ ସମସାମୟିକ । ଜଗନ୍ନାଥଙ୍କ ମଙ୍ଗଳ କୃତ୍ୟ ସମୟରେ ସେ ତାଙ୍କ ସହିତ ସେନାପତି ରୂପେ ବଉଦ ଗଡ଼ଜାତକୁ ଯାଇଥିଲେ । ଖୋରଧା ଘାଟିଠାରେ ଜଣେ ଦଳବେହେରା ବାଟରେ ପ୍ରାୟ ୩୦ । ୪୦ ହାତ ଉଚ୍ଚରେ ଗୋଟିଏ ଚମଦଉଡି ବାନ୍ଧି ଦେଇ ଗର୍ବ ଦର୍ପରେ କହିଲେ, "ଯେଉଁମାନେ ଆସୁଛ, ଯଦି ପ୍ରକୃତ ପାଇକ, ତେବେ ଦଉଡ଼ି କାଟି ଚାଲିଯାଅ, ନଚେତ୍ ଏଇଠାରୁ ତୁମ ନିଜ ଦେଶକୁ ଫେର ।"

ଏ କଣ କମ୍ ଅପମାନ ! ଶ୍ରୀଚନ୍ଦନ ଏ ବାକ୍ୟ ସହିପାରିଲେ ନାହିଁ, ଆଦେଶ ଦେଲେ—ଯେଉଁ ପାଇକ ଏ କାର୍ଯ୍ୟ କରିପାରିବ, ତାକୁ ଯଥୋଚିତ ପୁରସ୍କାର ଦିଆଯିବ । ସମସ୍ତ ପାଇକ ବହୁତ ଯତ୍ନ କଲେ; ମାତ୍ର ବିଫଳମନୋରଥ ହେଲେ । ପରିଶେଷରେ ଲୋକନାଥ ହୁଙ୍କାର ସହକାରେ ଏକା ଲମ୍ଫକେ ସେ ଦଉଡ଼ିଟାକୁ ହାଣି ପକାଇଲେ । ଶ୍ରୀଚନ୍ଦନ ତାଙ୍କର ଏ ଅଭୂତପୂର୍ବ ସାହସ ଦେଖି ବିସ୍ମିତ ହୋଇଗଲେ ଏବଂ ପାଇକମାନେ ବିଜୟ ଉଲ୍ଲାସରେ ଦିଗନ୍ତ ଉଚ୍ଛୁଳାଇ ଦେଲେ । ରାଜା କହିଲେ, "ଲୋକନାଥ, ତୁମର ତେବେ କି ପୁରସ୍କାର ଆବଶ୍ୟକ, ନିର୍ଭୟରେ ପ୍ରକାଶ କର ।"

ଲୋକନାଥ ବିନୀତ ସ୍ୱରରେ ଉତ୍ତର କଲେ, "ମହାରାଜଙ୍କ ଦୟାରୁ ମୋର କିଛି ଅଭାବ ନାହିଁ । ଯଦି ଶ୍ରୀମୁଖଙ୍କର ମୋପ୍ରତି ଅପାର ଅନୁଗ୍ରହ

ହେଉଛି, ତେବେ ମୁକ୍ତକଣ୍ଠରେ ମହାରାଜଙ୍କ ଚନ୍ଦନ ଟୋପିଟି ମୋତେ ପ୍ରଦାନ କରନ୍ତୁ । ପ୍ରତ୍ୟେକ ଚନ୍ଦନ ଉପରେ ସିନ୍ଦୁରଶିର ମାରିବାକୁ ଓ ମୁକୁଳା କେଶରେ ଅନ୍ୟାନ୍ୟ ଗଡ଼ଜାତ ଭ୍ରମଣ କରିବା ପାଇଁ ଆଦେଶ ଦିଅନ୍ତୁ ।"

ସେହି ଦିନଠାରୁ ଲୋକନାଥ ଚନ୍ଦନ ଟୋପା ଉପରେ ସିନ୍ଦୁରଶିର ମାରିବାକୁ ଏବଂ ମୁକୁଳା କେଶରେ ଅନ୍ୟାନ୍ୟ ଗଡ଼ଜାତ ଭ୍ରମଣ କରିବାକୁ ଆଦେଶ ପାଇଥିଲେ । ତାହା ପରେ ସେ କିଛି ଦିନ ବାଙ୍କୀରେ ରହି ପ୍ରଥମେ ବଡ଼ମ୍ବା, ତାପରେ ନରସିଂହପୁର ଓ ଢେଙ୍କାନାଳ ପ୍ରଭୃତି ଗଡ଼ଜାତ ଭ୍ରମଣ କରିଥିଲେ । ବଡ଼ମ୍ବାର ଛତ୍ରସୁବର ସିଂହଙ୍କ ସହିତ ଲୋକନାଥଙ୍କର ଅନେକ ତର୍କ ବିତର୍କ ଲାଗିଲା । ଯେତେବେଳେ ଲୋକନାଥ ତାଙ୍କର ଲୌହ ଧନୁଟିକୁ ଭଗ୍ନ କରିଦେଲେ, ସେତେବେଳେ ଛତ୍ରସୁବର ସିଂହ ତାଙ୍କୁ ମହାବୀର ବୋଲି ସ୍ୱୀକାର କଲେ । ଲୋକନାଥ ଯେଉଁ ସବୁ ଗଡ଼ଜାତ ଭ୍ରମଣ କରିଥିଲେ, ସେଠାକାର ରାଜାଙ୍କଠାରୁ ପ୍ରଚୁର ଭୂସମ୍ପତ୍ତି ଜାଗିର ସ୍ୱରୂପ ପାଇଥିଲେ । ମାତ୍ର ସାମାନ୍ୟ କାରଣରୁ ସବୁ ପରିତ୍ୟାଗ କରି ଅନ୍ତିମ ସମୟକୁ ଜନ୍ମଭୂମିକୁ ଫେରି ଆସିଲେ ।

ଲୋକେ କହନ୍ତି, ଏହି ମହାବୀର ୭୨ବର୍ଷ ବୟସରେ ତାଙ୍କ ନିଜ ଗୃହରେ ପ୍ରାଣତ୍ୟାଗ କଲେ ।

## ପଣ୍ଡିତ ଗୋବିନ୍ଦ ରଥ

ବାଙ୍କୀର ଅଦ୍ୱିତୀୟ କର୍ମବୀର, ପ୍ରଧାନ ରାଜନୀତିଜ୍ଞ, ସ୍ୱାଧୀନଚେତା, ପଣ୍ଡିତ ଗୋବିନ୍ଦ ରଥ ପାଟପୁର ଗ୍ରାମ ପଦ୍ମନାଭପୁର ଶାସନରେ ବ୍ରାହ୍ମଣ କୁଳରେ ଜନ୍ମଗ୍ରହଣ କରିଥିଲେ । ଏ ମହାଶୟ ଏକାଧାରରେ କବି, ପଣ୍ଡିତ, ସମାଜ-ସଂସ୍କାରକ, ରାଜନୀତିଜ୍ଞ ଓ ଦେଶସେବକ ଥିଲେ । ବାଲ୍ୟକାଳର ପାଠଶାଳା ଶିକ୍ଷା ସମାପ୍ତ କରି ନର୍ମାଲ ଟ୍ରେନିଂ ପାଶ୍ କରିଥିଲେ ।

ଯେତେବେଳେ ପ୍ୟାରୀମୋହନ କଟକରେ ଏକାଡେମୀ ସ୍କୁଲ ସ୍ଥାପନ କରିବାର ଉଦ୍‌ଯୋଗ କରିଥିଲେ, ସେ ସମୟରେ ରଥେ ତାଙ୍କୁ ପ୍ରଭୂତ ସାହାଯ୍ୟ କରିଥିଲେ। ସେହିଠାରେ ସେ ଗୋଟିଏ ପୁସ୍ତକାଳୟ ସ୍ଥାପନ କରି ଅନେକ ପ୍ରାଚୀନ ଗ୍ରନ୍ଥ ପ୍ରଭୃତି ମୁଦ୍ରଣ କରିବାରୁ ସାହିତ୍ୟ କ୍ଷେତ୍ରରେ ସେ ବିଶେଷ ଖ୍ୟାତି ଅର୍ଜନ କରିଥିଲେ। ସ୍ୱର୍ଗୀୟ ବ୍ୟାସକବି ଫକୀର-ମୋହନ ରଥଙ୍କର ଏ କାର୍ଯ୍ୟରେ ତୃପ୍ତ ଥାଇ ଲେଖିଥିଲେ :—

"ଆସ୍ତୁ କରିଛନ୍ତି ରଥେ ବ୍ରାହ୍ମଣପଣିଆ
ଛପିଗଲେ କେତେ ବହି ଅଣେ ଦ୍ୱିଅଣିଆ।"

ରଥେ ମଧ୍ୟ କଟକରେ ଥାଇ ଅନେକ ପୁସ୍ତକ ରଚନା କରିଥିଲେ। ତାଙ୍କ ରଚିତ "ବର୍ଣ୍ଣବୋଧକ" ଓ "କବିତାକଲାପ" ପାଠ୍ୟପୁସ୍ତକ ରୂପେ ମନୋନୀତ ହୋଇଥିଲା। ସେ ସେଥିରୁ ପ୍ରଭୂତ ଅର୍ଥ ଉପାର୍ଜନ କରି କଟକରେ ସ୍ଥାୟୀ ଗୃହ ଓ ଗୋଟିଏ ବଡ଼ ପୁସ୍ତକାଳୟ କରି ଯାଇଅଛନ୍ତି।

ରଥଙ୍କର ପ୍ରଧାନ ଗୁଣ ଥିଲା ତତ୍କାଳୀନ ଡେପୋଟିମାନଙ୍କର କାର୍ଯ୍ୟ ସମାଲୋଚନା କରିବା। ସେ ମଧ୍ୟ ଲୋକମାନଙ୍କ ଉପକାର ନିମିତ୍ତ ପାଟପୁରରେ ଗୋଟିଏ ହାଟ ବସାଇଥିଲେ ଏବଂ ଶ୍ରୀହନୁମାନ ଜୀଉଙ୍କ ମନ୍ଦିର ନିର୍ମାଣ ଓ ସେବାପୂଜା ସକାଶେ ବିଶେଷ ବନ୍ଦୋବସ୍ତ କରିଥିଲେ। ରଥଙ୍କ ପରି ସ୍ୱାଧୀନଚେତା ଓ ଭବିଷ୍ୟତ୍ ଦ୍ରଷ୍ଟା ଲୋକ ଅଳ୍ପ ଦେଖାଯାନ୍ତି। ସେ ତାଙ୍କ କୃତ "ଫିଚର୍ ସାହେବ"ରେ ଲେଖିଛନ୍ତି :—

"ଏଥର ମଲେ ସାହେବ ହେବି
ଲାଲ ମୁଣ୍ଡରେ Hat ଦେବି।"

ଏଥିରୁ ପାଶ୍ଚାତ୍ୟ ସଭ୍ୟତା ପ୍ରତି ତାଙ୍କର ବେଶ୍ ଅନୁରାଗ ଥିଲା ପରି ଜଣା ପଡ଼ୁଅଛି।

ଇଂ ୧୯୧୯ ମସିହା ଜ୍ୟୈଷ୍ଠମାସରେ ତାଙ୍କର ସେହି କର୍ମଭୂମି କଟକଠାରେ ୭୫ ବର୍ଷରେ ପରଲୋକ ଗମନ କଲେ। ଆଜିକାଲି ମଧ୍ୟ ତାଙ୍କ ପ୍ରତିଷ୍ଠିତ ପୁସ୍ତକାଳୟଟି "ଗୋବିନ୍ଦରଥ ପୁସ୍ତକାଳୟ" ନାମରେ ଅଭିହିତ ହେଉଅଛି।

---

## ରାୟବାହାଦୂର ବିଦ୍ୟାଧର ପଣ୍ଡା

ଲୋକ ଦରିଦ୍ର ହୋଇ ଜୀବନରେ କିପରି ମହତ୍‌କାର୍ଯ୍ୟ କରିପାରେ, ସେ ବିଷୟରେ ବିଦ୍ୟାଧର ଆଦର୍ଶସ୍ଥାନୀୟ ଥିଲେ । ବିଦ୍ୟାଧର ବାଙ୍କୀର ସରଣ୍ଡା ଅନ୍ତର୍ଗତ ସୁବର୍ଣ୍ଣପୁର ଗ୍ରାମରେ ବ୍ରାହ୍ମଣ କୁଳରେ ଜାତ ହୋଇ-ଥିଲେ । ପାଠଶାଳାର ଶିକ୍ଷା ଶେଷ କରି ଭର୍ଣ୍ଣାକ୍ୟୁଲର ପାଶ୍ ପରେ କଟକ ଟ୍ରେନିଂ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ପ୍ରଥମେ ସୁବର୍ଣ୍ଣପୁର ଭର୍ଣ୍ଣାକ୍ୟୁଲର ସ୍କୁଲର ପ୍ରଧାନ ଶିକ୍ଷକ ରୂପେ କାର୍ଯ୍ୟ କରି ସେଥିରୁ ପେନ୍‌ସନ୍ ପାଇ ତତ୍କାଳୀନ ଡେପୋଟି ବାଳମୁକୁନ୍ଦ କାନନ୍‌ଗୋଙ୍କ ଦ୍ୱାରା ବାଙ୍କୀରେ ସହଯୋଗ ଆନ୍ଦୋଳନ ଚଳାଇବା ଲାଗି ଅର୍ଗାନାଇଜର ରୂପେ ନିଯୁକ୍ତ ହେଲେ । ସେ ଜୀବନ ବ୍ୟାପି ଏହି କାର୍ଯ୍ୟ ଦକ୍ଷତା ସହକାରେ ଚଳାଇ ଗଭର୍ଣ୍ଣମେଣ୍ଟଙ୍କଠାରୁ ପ୍ରଥମେ ରାୟସାହେବ ଓ ପରେ ରାୟବାହାଦୂର ଉପାଧି ପାଇଥିଲେ ।

ସେ ବାଙ୍କୀ ଥାନାରୁ ଜିଲାବୋର୍ଡ଼ର ପ୍ରତିନିଧିରୂପେ ନିର୍ବାଚିତ ହୋଇ ଅନେକ ଦିନ ପର୍ଯ୍ୟନ୍ତ ସେ କାର୍ଯ୍ୟ ସୁଚାରୁରୂପେ ଚଳାଇଥିଲେ । ବାଙ୍କୀ ବିଞ୍ଚରେ ମଧ୍ୟ ଅନରାରୀ ମାଜିଷ୍ଟ୍ରେଟରୂପେ ଅନେକ କାଳ ରହିଥିଲେ ।

ବିଦ୍ୟାଧର ବିନୟୀ, ମିଷ୍ଟଭାଷୀ ଓ ସମଦର୍ଶୀ ଲୋକ ଥିଲେ । ତାଙ୍କୁ ବାଙ୍କୀର ପ୍ରଧାନ ସହଯୋଗୀ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ବିଦ୍ୟାଧର ଦୁର୍ଦାନ୍ତ ଚର୍ମରୋଗରେ ତାଙ୍କର ସର୍ବଶ୍ରେଷ୍ଠ କର୍ମଭୂମି ଚର୍ଚ୍ଚିକାରେ ପୀଡ଼ିତ ରହି କିଛୁଦିନ ପରେ ସ୍ୱଗ୍ରାମରେ ପ୍ରାଣତ୍ୟାଗ କଲେ ।

---

## ପଣ୍ଡିତ ନୀଳମଣି ବିଦ୍ୟାରତ୍ନ

ଏ ମହୋଦୟ ବାଙ୍କୀ ବୈଦ୍ୟେଶ୍ୱର ମୌଜା ବ୍ରଜବିହାରୀପୁର ଶାସ-ନରେ ଜନ୍ମଗ୍ରହଣ କରିଥିଲେ । ଭର୍ଣ୍ଣାକ୍ୟୁଲର ପାଶ୍ ପରେ ସେ ବାମଣ୍ଡା, ମୟୂରଭଞ୍ଜ, ବଡଖେମଣ୍ଡି ପ୍ରଭୃତି ଗଡଜାତ ରାଜାମାନଙ୍କ ନିକଟକୁ ଯାଇ ରାଜସଭାରେ ବିଶେଷ ଖ୍ୟାତି ଅର୍ଜନ କରିଥିଲେ ।

ରାଜାମାନଙ୍କ ଆନୁକୂଲ୍ୟରେ "ଉତ୍କଳ-ମଧୁପ", "ସମ୍ବଲପୁର-ହିତୈଷିଣୀ" ପ୍ରଭୃତି ଟେବେକାଟଜମାନ ସଂପାଦନ କରି ଦେଶର ପ୍ରଧାନ

ପ୍ରଧାନ ବ୍ୟକ୍ତିମାନଙ୍କର ଶ୍ରଦ୍ଧା ଆକର୍ଷଣ କରିଥିଲେ । ବ୍ୟାସକବି ଫକୀର-ମୋହନ ତାଙ୍କୁ ଲକ୍ଷ୍ୟ କରି କହିଥିଲେ—

"ଦରିଦ୍ରର ପୁଅ ମୋର ନୀଳମଣି ନନା
ଉଡ଼ାଉଛି ଉତ୍କଳରେ ଦେଶୋନ୍ନତି ବାନା ।"

ନୀଳମଣି ଅନେକଗୁଡ଼ିଏ ଗ୍ରନ୍ଥ ରଚନା କରିଥିଲେ । ତାକୁ "ବିଦ୍ୟାରତ୍ନ-ଗ୍ରନ୍ଥମାଳା" କହନ୍ତି । ତାଙ୍କ ଅକ୍ଷରଗୁଡ଼ିକ ଅତି ସୁନ୍ଦର ।

ଅନ୍ତିମ ସମୟରେ ସେ "ଉତ୍କଳ-ଦୀପିକା"ସଂପାଦନର ଗୁରୁ ଦାୟିତ୍ୱ ବହନ କରି ସୁଚାରୁରୂପେ ନିର୍ବାହ କରିଥିଲେ । ନୀଳମଣି କଟକ ନଗରରେ ପ୍ରାଣତ୍ୟାଗ କରିଥିଲେ । ସେ ଥରେ "ବ୍ରହ୍ମପୁର ଉତ୍କଳ-ସମ୍ମିଳନୀ"ର ସଭାପତି ହୋଇଥିଲେ ।

---

ବାଙ୍କୀର ବର୍ତ୍ତମାନ ପ୍ରତିଷ୍ଠିତ କେତେକ ବ୍ୟକ୍ତି:—

## ସାମନ୍ତ ଶ୍ରୀଯୁକ୍ତ ବିଶ୍ୱନାଥ ଶ୍ରୀଚନ୍ଦନ ମହାପାତ୍ର ବି, ଏ.

ବିଶ୍ୱନାଥ ଶ୍ରୀଚନ୍ଦନ ବର୍ତ୍ତମାନ ବାଙ୍କୀର ପ୍ରକୃତ ରାଜବଂଶଧର ଓ ସରକାରଙ୍କ ପ୍ରଦତ୍ତ ଖମାରମାନଙ୍କର ମାଲିକ । ଏ ମହାଶୟଙ୍କ ଭଳି ଉଦାର, ସରଳ ଓ ଦୟାଶୀଳ ବ୍ୟକ୍ତି ଅଳ୍ପ ଦେଖାଯାନ୍ତି । ବିଦ୍ୟା, ବିନୟ ଓ ପୁଣ୍ୟଶୀଳତାର ଆଧାରରୂପେ ଏ ମହାଶୟ ବାଙ୍କୀବାସୀଙ୍କର ଅନୁରାଗ-ଭାଜନ ହୋଇଅଛନ୍ତି । ବିଗତ ବିଷୟରେ ଅନରାରି ମାଜିଷ୍ଟ୍ରେଟ୍, ପ୍ରେସି-ଡେଣ୍ଟ ଓ ଜିଲ୍ଲାବୋର୍ଡ ମେମ୍ବରରୂପେ କିଛି କାଳ କାର୍ଯ୍ୟ କରିଥିଲେ । ବାଙ୍କୀର ଉପୋଟିମାନେ ରାଜବଂଶୀୟ ବୋଲି ଏହାଙ୍କୁ ବିଶେଷ ଖାତିର କରନ୍ତି । ସ୍ଥାନୀୟ ଉଚ୍ଚ ଇଂରାଜୀ ବିଦ୍ୟାଳୟର ସମ୍ପାଦକରୂପେ ଏ ମହାଶୟଙ୍କ କାର୍ଯ୍ୟ ପ୍ରଶଂସନୀୟ । ଦେବ-ବ୍ରାହ୍ମଣ-ଭକ୍ତି ମଧ୍ୟ ଅତୁଳନୀୟ । ଏହାଙ୍କ ଯତ୍ନରେ ଚର୍ଚ୍ଚିକା ମହାମାୟୀଙ୍କ ମନ୍ଦିର ବର୍ତ୍ତମାନ ଉତ୍ତମରୂପେ ଚାଳିତ ହେଉଅଛି ।

## ରାୟସାହେବ ଶ୍ରୀଯୁକ୍ତ ଖଗେନ୍ଦ୍ରଚନ୍ଦ୍ର ମହାପାତ୍ର ବି. ଏ.

ଏ ମହାଶୟଙ୍କର ଜନ୍ମଭୂମି ଚର୍ଚ୍ଚିକା ଗ୍ରାମରେ । ଏହାଙ୍କ ପିତା କରୁଣାକର ମହାପାତ୍ର ପ୍ରକୃତରେ କରୁଣାକର ଥିଲେ । ଖଗେନ୍ଦ୍ରଚନ୍ଦ୍ର

ବର୍ତ୍ତମାନ ବାଙ୍କୀରେ ଯେ ପ୍ରତିଷ୍ଠା ଲାଭ କରି ସୁଖ୍ୟାତି ଅର୍ଜନ କରିଅଛନ୍ତି, ତାହା ସେ ବଂଶ କାହିଁକି ବାଙ୍କୀ ପକ୍ଷରେ ଗୌରବାବହ । ସେ ସ୍ଥାନୀୟ ଇଉନିୟନ ବୋର୍ଡର ପ୍ରେସିଡେଣ୍ଟ, ଅନରାରି ମାଜିଷ୍ଟ୍ରେଟ, ବ୍ୟାଙ୍କର ଅନରାରି ସେକ୍ରେଟେରି ଏବଂ ଜିଲାବୋର୍ଡର ମେମ୍ବର ଥାଇ ଏକାଧାରରେ ଏ ସମସ୍ତ କାର୍ଯ୍ୟ ସୁଚାରୁରୂପେ ନିର୍ବାହ କରିଥିବାରୁ ଗଭର୍ଣ୍ଣମେଣ୍ଟଙ୍କଠାରୁ ରାୟସାହେବ ଉପାଧି ପ୍ରାପ୍ତ ହୋଇଅଛନ୍ତି । ନାନାଦି କାର୍ଯ୍ୟରେ ଗଭର୍ଣ୍ଣମେଣ୍ଟ ଏ ମହାଶୟଙ୍କଠାରୁ ମତ ଲୋଡ଼ିଥାନ୍ତି ।

ବିଶେଷତଃ ବାବୁ ମହୋଦୟଙ୍କ ଅକ୍ଳାନ୍ତ ପରିଶ୍ରମ ଓ ଯତ୍ନବଳରୁ ବାଧ୍ୟତାମୂଳକ ଶିକ୍ଷା ବାଙ୍କୀରେ ସ୍ଥାୟୀ ହେବାଦ୍ୱାରା ନିରକ୍ଷର ପ୍ରଜାମାନଙ୍କର ପ୍ରଭୂତ ଉପକାର ସାଧିତ ହେଉଅଛି ।

## ବାଙ୍କୀର ସ୍ୱାୟତ୍ତଶାସନ ବିଭାଗ

ବାଙ୍କୀରେ ଏହି ବିଭାଗ ତରଫରୁ ୩ଟି ଅନୁଷ୍ଠାନ ହୋଇଅଛି । ଯଥା— ବାଙ୍କୀ-ଡମପଡ଼ା ସହଯୋଗ ବ୍ୟାଙ୍କ, ହାଇସ୍କୁଲ ଓ ଇଉନିୟନ ବୋର୍ଡ ।

**ବ୍ୟାଙ୍କ:—**

ଏହି ଅନୁଷ୍ଠାନଟି ଦରିଦ୍ର ପ୍ରଜାମାନଙ୍କୁ ଅଳ୍ପ ସୁଧରେ ଋଣ ଦେବାଦ୍ୱାରା ବିଶେଷ ସୁବିଧା ହୋଇଅଛି । ସଦର ଇଉନିୟନ ଅଧୀନରେ ବର୍ତ୍ତମାନ ୧୪୪ ଗୋଟି ଗ୍ରାମ୍ୟ ସମିତି ଗଠିତ ହେଉଅଛି ।

**ହାଇସ୍କୁଲ:—**

ଏ ସ୍କୁଲଟି ସ୍ଥାପିତ ହେବାରୁ ବାଙ୍କୀବାସୀ ତଥା ନିକଟବର୍ତ୍ତୀ କେତେକ ଗଡ଼ଜାତରୁ ବହୁ ଛାତ୍ର ଆସି ଅଧ୍ୟୟନ କରୁଅଛନ୍ତି । ଏହା ବାଙ୍କୀବାସୀଙ୍କ ପକ୍ଷେ କମ୍ ମଙ୍ଗଳକର କଥା ନୁହେ ।

**ଇଉନିୟନ ବୋର୍ଡ:—**

ଏହି ବୋର୍ଡ ଅଧୀନରେ କେତେଗୁଡ଼ିଏ ପ୍ରାଇମେରି ସ୍କୁଲ ଚଳୁଅଛି । ଏହା ନିରକ୍ଷର ପ୍ରଜାମାନଙ୍କ ପକ୍ଷେ ଅତି ମଙ୍ଗଳଜନକ । ଗ୍ରାମ୍ୟ ରାସ୍ତା ନିର୍ମାଣ, କୂପଖନନ ଓ ସ୍ୱାସ୍ଥ୍ୟରକ୍ଷା ବିଷୟରେ ନାନାପ୍ରକାର ସୁବିଧା କରିବା ବୋର୍ଡର ମୁଖ୍ୟ ଉଦ୍ଦେଶ୍ୟ ।

ସ-ମା-ପ୍ତ

# ବିଜ୍ଞାପନ

# ବୀରବାଳା-ଶୁକଦେଈ

ପ୍ରକାଶିତ ହେବ

ନଥନ୍ତୁ ! ପଢ଼ନ୍ତୁ !! କଣନ୍ତୁ !!!

ଭାରତ୍ବାଦର ଜୀବନ୍ତ ଜ୍ୱଳନ୍ତ ଛବି

ଏଥେ ପଢେ ଛଡେ ଛଡେ

ବୀରରସର ମଧୁର ଉତ୍ସ

ଭାବ ଉଚ୍ଚ, ଭାଷା ପ୍ରାଞ୍ଜଳ ଓ ସରସ

ମୂଲ୍ୟ ଌ ୦ ।

ପ୍ରକାଶକ
ସରସ୍ୱତୀ ଷ୍ଟୋର
ବାଙ୍କୀ

Printed by C. Misra B. A. Naba Bharat Press, Cuttack